ଗାନ୍ଧିଧର୍ମୀ

# ବାବାଜି ନାଟକ

[ ଜଗ୍‌ମୋହନ ଲାଲଙ୍କ ସ୍ୱରଚିତ ନାଟକ ବାବାଜିର ନବନାଟ୍ୟ ରୂପ ]

ନାଟ୍ୟକାର

**ଗୋପାଳ ଛୋଟରାୟ**


ଫ୍ରେଣ୍ଡସ୍ ପବ୍ଲିଶର୍ସ



ମୁଦ୍ରାକର ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ-୨

**ବାବାଜି ନାଟକ**—ଲେଖକ : ନାଟ୍ୟକାର ଗୋପାଳ ଛୋଟରାୟ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୧୯୮୪, ମୁଦ୍ରଣ : ନନ୍ଦକିଶୋର ପ୍ରେସ, କଟକ-୨

BABAJI NATAKA—Author : Natyakar Gopal Chhotaray, Published by : Sahadev Pradhan, Friends' Publishers, Binodbehari, Cuttack-753002, Orissa, (India) First Edition : 1984, Printed at : Nandkishore Press, Cuttack-2, Price—Rs. 7-00

ପରମ ପ୍ରୀତିଭାଜନ

**ଡକ୍ଟର ଉମେଶଚନ୍ଦ୍ର ସାମଲ**

ସ୍ନେହାସ୍ପଦେଷୁ

ମଉସା

# ନିଜକଥା

କଟକ ଦୂରଦର୍ଶନ କେନ୍ଦ୍ର ପ୍ରଥମ ଓଡ଼ିଆ ନାଟକ 'ବାବାଜି'ର ଏକ ଗୀତିଧର୍ମୀ ନାଟ୍ୟ ରୂପାନ୍ତର ଗ୍ରହିଁଲେ । ମୂଳ ବାବାଜି ନାଟକରେ ମାତ୍ର ଦୁଇଗୋଟି ଭଜନ ବ୍ୟତୀତ ଅନ୍ୟ କିଛି ଗୀତ ନାହିଁ । ପ୍ରାୟ ଗୀତିନାଟ୍ୟ ଢଙ୍ଗରେ ଏଭ ଗୀତିଧର୍ମୀ ରୂପାନ୍ତରକୁ ମୁଁ ଉତ୍ସାହ ଜନକ ବୋଧ କଲି । କିନ୍ତୁ ଦେଖାଗଲା, ମୂଳ ନାଟକର ପ୍ରାୟ ଦୁଇ ତୃତୀୟାଂଶ ବର୍ଣ୍ଣନା ଧର୍ମୀ ହୋଇଛି । ଅର୍ଥାତ୍, ନାଟକର ଗଳ୍ପ ସମ୍ପର୍କୀୟ ଯେଉଁସବୁ ନାଟକୀୟ ଘଟଣା ଅନ୍ତରାଳରେ ଘଟି ଯାଇଛି, ସେ ସବୁକୁ ନାଟକ ଅଙ୍କରେ ସ୍ଥାନ ଦିଆ ନଯାଇ କେବଳ ସଂଳାପଦ୍ୱାରା ବର୍ଣ୍ଣନା କରି ଯାଇଛି । ଏହାଦ୍ୱାରା ନାଟକଟିର ଅଭିନୟ ଦର୍ଶକମାନଙ୍କର ହୃଦୟଗ୍ରାହୀ ହୋଇ ନ ପାରିବାର ଆଶଙ୍କା ଅନୁଭୂତ ହେବା ସ୍ୱାଭାବିକ । ଏଇ ବିଷୟରେ, ବର୍ତ୍ତମାନ ଏଇ ନବ ନାଟ୍ୟରୂପରେ ଉପରୋକ୍ତ ବର୍ଣ୍ଣନା ଧର୍ମୀ ଦୃଶ୍ୟ ସବୁକୁ ଘଟଣା ଧର୍ମୀ (action oriented) ଦୃଶ୍ୟରେ ରୂପାନ୍ତରିତ କରାଯାଇଛି । ଏହି ପ୍ରକ୍ରିୟାରେ ମୂଳ ନାଟକ ଅପେକ୍ଷା ନବ-ନାଟ୍ୟ ରୂପର କଳେବର ତ ବୃଦ୍ଧି ପାଇଛି—ଯେଉଁସବୁ ଚରିତ୍ର ଅନ୍ତରାଳରେ ରହିଯାଇଥିଲେ, ସେମାନେ ଦୃଶ୍ୟମାନ ହୋଇଛନ୍ତି । ମୂଳ ନାଟକର ଦୁଇଗୋଟି ଭଜନ ("ପତିତପାବନ ସତେକ ଦର୍ଶନ" ଓ "ବିଶ୍ୱପତି, କି ଦେଇ ତୋଷିବି ତୁମ୍ଭ ମତି"—ଯଥାକ୍ରମେ ପାଞ୍ଚ ଓ ଏକୋଇଶି ପୃଷ୍ଠା) ସହିତ ନୂତନ ବାରଗୋଟି ଗୀତ ଏଇ ଗୀତିଧର୍ମୀ ନବ ନାଟ୍ୟରୂପରେ ସଂଯୋଜିତ ହୋଇଛି ।

କଟକ ଦୂରଦର୍ଶନ କେନ୍ଦ୍ର ଏଇ ନବ ନାଟ୍ୟରୂପର ଚିତ୍ର ଗ୍ରହଣ କରିଚନ୍ତି । ପ୍ରଯୋଜକ ରତିମିଶ୍ର — ନିର୍ଦ୍ଦେଶକ ଧୀର ମଲ୍ଲିକ । ପରିବେଷଣ କରିଛନ୍ତି ଭୁବନେଶ୍ୱରର ଶତାବ୍ଦୀର କଳାକାର ସଂସ୍ଥା । ଏହି ସଂସ୍ଥାଦ୍ୱାରା ପୁଣି ଏଇ ନାଟ୍ୟରୂପଟି ଭୁବନେଶ୍ୱର ରବୀନ୍ଦ୍ର-ମଣ୍ଡପରେ ମଞ୍ଚସ୍ଥ ହୋଇଅଛି ।

ଆଲମଚନ୍ଦବଜାର
କଟକ-୨

**ଗୋପାଳ ଛୋଟରାୟ**

**ଜଗ୍‌ମୋହନ ଲାଲ୍‌ଙ୍କ ବହୁଚର୍ଚ୍ଚିତ ନାଟକ—ବାବାଜୀର**

ଗୀତିଧର୍ମୀ ନବନାଟ୍ୟରୂପ—**ଗୋପାଳ ଛୋଟରାୟ**

ଅଭିନୟ ପରିବେଷଣ—ଶତାବ୍ଦୀର କଳାକାର, ଭୁବନେଶ୍ୱର

କଟକ ଦୂରଦର୍ଶନ କେନ୍ଦ୍ରଦ୍ୱାରା ଚିତ୍ରଗ୍ରହଣ—୧୦-୯-୮୪

**ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପରେ ମଞ୍ଚ ଅଭିନୟ—୨୭-୯-୮୪**

## କଳାକାର ପରିଚୟ :

### ପୁରୁଷ

ବାବାଜୀ—ଅକ୍ଷୟମୋହନ ମହାନ୍ତି

ପୂଜାରୀ—ରଇସନ ମାଝି

ପ୍ରଫୁଲ୍ଲ କୁମାର ମହାନ୍ତି ।

ସୁବଳବାବୁ—ଦାଉଦର ରେହମାନ

ରାମା—ସରୋଜ ମହାପାତ୍ର

ମହନ୍ତ—ଧୀର ମଲ୍ଲିକ

ଅଧିକାରୀ—ସୁନାକର ଶତପଥୀ

ଷାଉ—ବୃନ୍ଦାବନ ବାରିକ

ସାଧୁ—ସେଖ୍ ହବିବୁଲ୍ଲା

ଚେଲା—ଦାମୋଦର ନାୟକ

ବାବା—ଶଙ୍କେଶ୍ୱର ପଟ୍ଟନାୟକ

କହୁଣି—ଗୋକୁଳାନନ୍ଦ ସାହୁ

ମାଗୁଣି—ବୈଶାଖୁ ନାୟକ

କନଷ୍ଟେବଲ—କଳିଙ୍ଗ କୁମାର ଦାସ

ଶିବ—ସୁରୁଚନ୍ଦ୍ର ମହାନ୍ତି

ଜେମ୍ସ୍—ନୀଳକଣ୍ଠ ସାହୁ

ନବୀନା—ବିନୋଦ ରାଉତ
ହନୁସିଂ—ହରିହର ସେଠି
ଗୁଣିଆ—ମନମୋହନ ବାରିକ

## ସ୍ତ୍ରୀ

ମାଳତୀ—ପୁଷ୍ପା ପ୍ରହରାଜ
କଳାବତୀ—କୁନମିଶ୍ର
ସ୍ତ୍ରୀ—ମିନତି
ରାଧି—ସୂର୍ଯ୍ୟକୁମାରୀ
ଜେମି—ମଣିଦୀପା ମଲ୍ଲିକ

ସହକାରୀ ନିର୍ଦ୍ଦେଶକ—ଦର୍ପନାରାୟଣ ସେଠି
ଶବ୍ଦ ଗ୍ରହଣ—ଶବ୍ଦ ପୁରୀ
ଆଲୋକ—ପ୍ରଫୁଲ୍ଲ
ରୂପସଜ୍ଜା—ବାଞ୍ଛାନିଧି ପଟ୍ଟନାୟକ
ପରିଚ୍ଛଦ—ପ୍ରତିମା ଚସାଳୟ



## ଗୋପାଳ ଛୋଟରାୟଙ୍କର ଅନ୍ୟ ରଚନା :

: ନାଟକ :

ଫେରଆ
ଭରସା
ପୂର୍ବପୂର ପାରବାରକ—୧ମ ଭାଗ
ପୂର୍ବପୂର ପାରବାରକ—୨ୟ ଭାଗ
ସାଧନା
ଘରଜ୍ୱାଇଁ
ପରକଲମ (ଦିଲ୍ଲୀ ଜାତୀୟ ନାଟକ ଉତ୍ସବରେ ଅଭିନୀତ )
ହାସ୍ୟରସର ନାଟକ
( କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ )
ଅର୍ଦ୍ଧାଙ୍ଗିନୀ
(ରାଜ୍ୟ ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ପୁରସ୍କୃତ)
ଅମଡ଼ାବାଟ
ଘଟକ
ଝିଅ୍ଜ୍ୱାଇଁ
ଶଙ୍ଖାସିନ୍ଦୂର
ମଲ୍ଲଜହ୍ନ
ପଥିକବନ୍ଧୁ
ପ୍ରତିଭା
ନଷ୍ଟ ଉର୍ବଶୀ
ଅଭାଗିନୀର ସ୍ୱର୍ଗ
ନୂଆବୋଉ
ଶାଖାପ୍ରଶାଖା
ପଦ୍ମାଳୟ
ଶ୍ରୀହରିଙ୍କ ସଂସାର
ସହଧର୍ମିଣୀ
ସତରଞ୍ଜି

: ଗୀତିନାଟ୍ୟ :

ସଂପୂର୍ଣ୍ଣ ରାମାୟଣ
ଗଣେଶ
ମହିଷମର୍ଦ୍ଦିନୀ
ଜନ୍ମାଷ୍ଟମୀ
ନପାହୁ ରାତି
କୋଇଲି ହଁ ଟି
ଶ୍ରୀମନ୍ତ ସମାର୍ଜିନୀ
ମୀରାବାଈ
ଶ୍ରୀଜଗନ୍ନାଥ
ବିନ୍ଦୁସାଗର
ଘରବର ଦେଖା
ସୀତା-ଲବକୁଶ
ଛଟୋଟି ଅପେରା ଏକତ୍ର
(ରାଜ୍ୟ ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ)

[ ଓଡ଼ିଶା ଉପକୂଳବର୍ତ୍ତୀ ଅଞ୍ଚଳର ଏକ ଗ୍ରାମ୍ୟ-ସହର ।

ସ୍ଥାନ—ସୁବଳ ବାବୁଙ୍କ ବୈଠକଖାନା ।

କାଳ—ଊନବିଂଶ ଶତାବ୍ଦୀର ସପ୍ତମ ଦଶକ ।

ସମୟ—ମଧ୍ୟାହ୍ନ ।

ଏହି ଗୀତିନାଟ୍ୟ ବର୍ଣ୍ଣିତ ଘଟଣା ମାତ୍ର ଗୋଟିଏ ଦିନର ମଧ୍ୟାହ୍ନରୁ ସନ୍ଧ୍ୟା ଭିତରେ ଘଟିଛି ।
ସ୍ୱଚ୍ଛଳ ଅବସ୍ଥା ସମ୍ପନ୍ନ ବାବୁ ସୁବଳ ପଟ୍ଟନାୟକ ବସି ହୁକା ଟାଣୁଛନ୍ତି । ଜଣେ ବାବାଜି ଆସିଲେ । ତେଜୋଦୃପ୍ତ ମୁଖ । ପରିଧାନ ଗେରୁଆ ବସ୍ତ୍ର । ମସ୍ତକରେ ଜଟାଜୂଟ । କିନ୍ତୁ ହସ୍ତରେ ଝୁଲି, ଚିମୁଟା ଓ ମାଳା ପ୍ରଭୃତି ନାହିଁ । ଅଛି ମାତ୍ର ଗୋଟିଏ କମଣ୍ଡଳୁ ]

ବାବାଜି ॥ ବାବୁ ସୁବଳ ପଟ୍ଟନାୟକଙ୍କର ଜୟ ଜୟକାର ହେଉ ।

ସୁବଳ ॥ ଦଣ୍ଡବତ ବାବାଜି ମହାରାଜ ।

ବାବାଜି ॥ ମଙ୍ଗଳ ହେଉ । ଈଶ୍ୱର ଆପଣଙ୍କୁ ସୁଖରେ ରଖନ୍ତୁ ।

ସୁବଳ ॥ ଆପଣଙ୍କ ମଠ ?

ବାବାଜି ॥ (ସ୍ୱଳ୍ପହସି) ଆମ୍ଭର ମଠ ନାହିଁ ବାବା ।

—ଗୀତ—

ଘର ପରିବାର ସବୁତ ଛାଡ଼ିଲୁ,
ମଠେ କିବା ପ୍ରୟୋଜନ
ଘର ଧନ୍ଦା ଯାହା, ମଠ ଧନ୍ଦା ତାହା,
ଏ ଦୁଇ ଧନ୍ଦା ସମାନ

ବାବୁ ହେ, ହେଲା ଆସି ଦୁଇ ଦିନ
ନଣ୍ଟକୂଳ ଆମ୍ଭ ତୋଟାମାନ ତଳେ,
ପାତନ୍ତୁ ଆମ୍ଭ ଆସନ । ୧ ।

ସୁବଳ ॥ କୁଆଡ଼େ ଆସିବା ହେଲେ ?

ବାବାଜି ॥ ଭୋଜନ ଆଶାରେ ।

ସୁବଳ ॥ ଭଲକଥା । ଏ ପଇସା ଦୁଇଟି ଭିକ୍ଷା ନେବା ହୁଅନ୍ତୁ ।

ବାବାଜି ॥ ପଇସା ! (ଅଳ୍ପ ହସି) ଆମ୍ଭେ ପଇସା ଭିକ୍ଷା କରୁନା ।

—ଗୀତ—

ପଇସାରେ ଆମ୍ଭ ନାହିଁ ପ୍ରୟୋଜନ
ମିଳୁ ମୁଠିଏ ଭୋଜନ
ମୋଟାଚୁଡ଼ା କିଛି ଅନ୍ନ,
ଥାଏ ଯଦି ସାମାନ୍ୟ କିଛି ବ୍ୟଞ୍ଜନ
ବାବୁ ହେ, ଆମେ ତ ସାଧୁ ସନ୍ନ୍ୟାସୀ
ଅର୍ଥ ଆମ୍ଭ ପକ୍ଷେ ବିଷ ତୁଲ୍ୟ,
ଆମ୍ଭେ ନୋହୁ ସେଥିରେ ପ୍ରୟାସୀ । ୨ ।

ବାବୁ ॥ ଇରେ ରମା । ବାବାଜିଙ୍କ ପାଇଁ ଗୋଟିଏ ସିଧା ସଜାଡ଼ି ଆଣ ।

ରମା ॥ (ଭିତରୁ) ହଉ ଆଜ୍ଞା ।

ବାବୁ ॥ ବାବାଜି ମହାରାଜ, ହୁକା ସଜ ହୋଇ ରହିଛି—ଟିକିଏ ତମାଖୁ ଟାଣନ୍ତୁ ।

ବାବାଜି ॥ ନାହିଁ ବାବା ।

ବାବୁ ॥ ତେବେ ଗଞ୍ଜା ଗୁଡ଼ି ? ଏଇ, ଚିଲମ ଧରନ୍ତୁ ।

ବାବାଜି ॥ ନାହିଁ ବାବା ।

ବାବୁ ॥ ତମାଖୁ ନାହିଁ ! ଗଞ୍ଜା ନାହିଁ !! ଆପଣ ଜଣେ ବାବାଜି ନା ? ଶାସ୍ତ୍ରରେ ଅଛି ସାଧୁ ବାବାମାନେ ନିଶା ସେବନ କରନ୍ତି ।

ବାବାଜି ॥ ଏହା ଶାସ୍ତ୍ର ବଚନ ନୁହେଁ—ନିଶାଖୋରଙ୍କ କଥା ।
ନିଶା ବଡ଼ ମନ୍ଦ—ସ୍ପର୍ଶ କରିବାର ନୁହେଁ ।

ବାବୁ ॥ ଆମ୍ଭେ ପାଠ ଶାଠ ପଢ଼ିଛୁ—ବିଦ୍ୟାଲାଭ କରିଛୁ ।
ଆମ୍ଭେମାନେ ଜାଣୁ ନିଶା ଯେତିକି ମନ୍ଦ, ସେତିକି ଭଲ ।
ନିଶାରେ ଭାରି ମଜା ଅଛି ।

ବାବାଜି ॥ ନାଇଁ ବାବା । ମଜା ଥିଲେ, ବେମଜା ବି ଥିବ । ଆମେ
ଜାଣୁ ସାରା ମଜା ଈଶ୍ୱର ଚିନ୍ତାରେ ।

[ ସିଧା ଆଣି ରାମା ଆସିଲା ]

ରାମା ॥ ସିଧା ଆଣିଲି ସାଧୁ ମହାରାଜ ।

ବାବାଜି ॥ ଆଚ୍ଛା ବାବା, ଆନନ୍ଦ ହେଉ । ମାତ୍ର ଭୋଷେଇର
ବ୍ୟବସ୍ଥା ତ ଆମର କିଛି ନାହିଁ । ସିଧା କଣ ହେବ ?
...ଠାକୁର ପ୍ରସାଦ ମୁଠିଏ ହେଲେ ଭୋଜନ କରି ନାମ
ଭଜନ କରିବୁ ।

ବାବୁ ॥ ପ୍ରସାଦ ସେବା କାମତ ବଢ଼ି ଗଲାଣି ।...ରାମା, ପୂଝାରୀକୁ
ଡାକ୍-ଭୋଷେଇ କରିବ ।

ରାମା ॥ ସିଏ ଖାଇପିଇ ଶୋଇବାକୁ ଯାଉଛି । ମୁଁ ଡାକିଲେ
ମୋ ଉପରକୁ କ୍ରୁଦ୍ଧ ଉଠିବ—ମତେ ମାରି
ଗୋଡ଼େଇବ ।

ବାବୁ । ହଉ ରହ । (ଡାକିଲେ) ପୂଝାରୀ, ପୂଝାରୀ...

ପୂଝାରୀ ॥ କଣ ଆଜ୍ଞା ? ( ପୂଝାରୀ ଆସିଲା )

ବାବୁ ॥ ଏ ସିଧା ନେଇ ଠାକୁର ଆଡ଼େ ଭୋଷେଇ କର ।
ବାବାଜି ଗୋସେଇଁ ଖାଇବେ ।

ପୂଝାରୀ ॥ ହଁ...ଉ । (ପ୍ରସ୍ଥାନ)

ବାବୁ ॥ ଭୋଷେଇତ ଟିକିଏ ବିଳମ୍ବ ହେବ । ଏ ଭିତରେ
ଗୋଟିଏ ଭଜନ ଶୁଣିଲେ ଏ କର୍ଣ୍ଣ ପବିତ୍ର ହୁଅନ୍ତା ।

ବାବାଜି ॥ ଆଚ୍ଛା ବାବା ।

ବାବୁ ॥ (ନିମ୍ନ ସ୍ୱରରେ) ରମା । ଆଲମିରାରୁ ବୋତଲ ଆଉ ଗିଲସ ଆଣ ।

ରମା ॥ ଆଜ୍ଞା, ଏ ବାବାଜି ଏଠି ଚେକା ପକେଇ ବସିଚି, ଆପଣେ ମଦ ପିଇବେ ?

ବାବୁ ॥ ଚୁପ୍ । ଭଜନ ଆଗରୁ ବାବାଜି ଟିକିଏ ଧ୍ୟାନରେ ବସିଛନ୍ତି । ତୁ ଆଣ । ସେ ଜାଣିବେ, ଆମ୍ଭେ ମଦ୍ୟପାନ କରୁନୁ—ସର୍‌ବତ୍ ପିଉଛୁ । ସେ ଯେତେବେଳେ ଭଜନ କରିବେ—ଆମ୍ଭେ ସୁରାପାନ କରି ଉନ୍ମାଦରେ ବାଈବେଶ ହେଇ ନାଚିବୁ ' ଭାରି ମଜା ହବ ।

[ ରମା ବୋତଲ ଓ ଗ୍ଲାସ ଆଣି ଥୋଇଲା ]

ବାବୁ ॥ ଧ୍ୟାନ ଭଙ୍ଗ ହେଲା ମହାରାଜ ?

ବାବାଜି ॥ ହଁ, ଟିକିଏ ନାମ ସ୍ମରଣ କରୁଥିଲୁଁ ।

ବାବୁ ॥ ଆପଣଙ୍କରିତ ଇଏ ଚଳିବ ନାହିଁ । ଆମ୍ଭେ ଟିକିଏ ସର୍‌ବତ୍ ପାନ କରୁଛୁ । ଆପଣ ଭଜନ ଆରମ୍ଭ କରନ୍ତୁ ।

ବାବାଜି ॥ ହଉ ବାବା, ତୁମ୍ଭେ ତୁମ୍ଭର ଯାହା ପାରୁଛ ପାନକର ।

[ ବାବାଜିଙ୍କର ଭଜନ ଆରମ୍ଭ ସଙ୍ଗେ ସଙ୍ଗେ ବାବୁଙ୍କର ପାନ ଆରମ୍ଭ ହୋଇଗଲା ]

—ଭଜନ—

ପତିତ ପାବନ, ସତେକି ଦର୍ଶନ କରିବ ଏ ପାପୀ
ପାଦ ତୁମ୍ଭର,
ଯେଉଁ ଯେ ଚରଣେ ଅମୃତ ପ୍ରଦାନେ କୋଟି ପାପହର
ସନ୍ତାପ ହାରି । ୧ ।

ମୋହରେ ଜଡ଼ିତ ହୋଇଛୁ ମୋ ଶତ୍ରୁ, ଜଟିଳ କୁଟିଳ
ଘୋର ଫସାଷ
ଉପାୟ ନାହିଁତ ତୁମର ବ୍ୟତୀତ ରଖହେ ଅଧମ-
ଉଦ୍ଧାର କାଷ । ୨ ।

[ ମଦ ନିଶାରେ ଉନ୍ମତ୍ତ ହୋଇ ବାବୁ
ନୃତ୍ୟ କରିବାରେ ଲଗିଲେ ]

ବାବାଜି ॥ ଯେ ଇଚ୍ଛା ସେ ଦଣ୍ଡ ଦେଇ ପ ପ ଖଣ୍ଡ କର ମତେ ତବ
ସେବକ ହରି
କରହେ କରୁଣା ଏତିକି କାମନା ପୂର୍ଣ୍ଣକର ଏହି
ମୋର ଗୁହାରି । ୩ ।

ବାବୁ ॥ (ନିଶାରେ) ଗ୍ରମା, ଗୋଟାଏ ଶାଢ଼ୀ ଆଣ—ମୁଁ ବାଈ
ବେଶ ସାଜି ନାଚିବି—ବାଈନାଚ ।

[ ଗ୍ରମା ଗୋଟିଏ ଶାଢ଼ୀ ଆଣି ଦେଲା ।
ଶାଢ଼ୀ ପିନ୍ଧି ବାବୁ ବାଈନାଚ ନାଚିଲେ ।
ବାବାଜି ଏ ସବୁ ଦେଖି ହତବୁଦ୍ଧି ହୋଇ
ପଡ଼ିଛନ୍ତି । ବାବୁ ଆଉ ନିଜକୁ ଆୟତ୍ତ କରି
ନପାରି ଭୂମିରେ କଡ଼ିଡ଼ ହୋଇ ପଡ଼ି ଅଚେତ
ହୋଇଗଲେ ]

ବାବାଜି ॥ (ମନକୁ ମନ) ମୁହଁର କଥା ମୁହଁରେ ଅଛି—ଦେଖୁ
ଦେଖୁ କଣ ହୋଇଗଲା ! ଭଜନ ବେଳେ ମଦ୍ୟପାନ !
ଏପରି ବ୍ୟକ୍ତିର, ଏପରି ଆଚରଣ ।

[ ପୂଝାରୀ ଆସିଲା ]

ବାବାଜି ॥ ପୂଝାରୀ, ବାବୁଙ୍କର ଏ କ'ଣ ହେଲା ?

ପୂଝାରୀ ॥ ମଲା, ଡମେ ଭଜନ କୀର୍ତ୍ତନ କଲ—ବାବୁ ସେଥିରେ
ଭୋଳ ହୋଇ ଉଦଣ୍ଡ ନାଚ ଗୋଲ୍ ହୋଇ

ଯାଇଛନ୍ତି । ହବ ଆଉ କଣ ? ତେମେ ଠାକୁର ପିଣ୍ଡାକୁ ଆସ ।

[ ଦୁହିଁଙ୍କର ପ୍ରସ୍ଥାନ ]

❋ ❋ ❋

[ ଠାକୁର ପିଣ୍ଡା । ରାଗରେ ଜର ଜର ହୋଇ ପୂର୍ଣ୍ଣାସ୍ତ୍ର ଆସିଲା । ]

ପୂର୍ଣ୍ଣାସ୍ତ୍ର ॥ ବାବୁ ହୋଇଚନ୍ତି ଯେ, ମଣିଷର ହାନଲାଭକୁ ଚିକେ ସାହା ଭରସା ନାହିଁ । ଯା'ଙ୍କ ଘରେ ରୁକସ୍ତ କରିବୁଁ ବୋଲି ହନଗ୍ରାଡ ଖଟେଇ ଖଟେଇ ମାରିବେ । ······ ହୁକୁମ ହେଲା କଣ ନା—ଏ ଅବେଳାଟାରେ ବ୍ରନ୍ଧବାଡ଼ି ବାବାଜକୁ ଖାଇବାକୁ ଦେ······ରହ, ଦଉଚ ମୁଁ ତାକୁ ପଠାଏ ବ୍ୟବସ୍ଥା କରି ।

[ ରମା ଆସିଲା ]

ରମା ॥ ହେ ନନା, ତୁମେ ଯେବେ ବ୍ରହ୍ମବାଡ଼ି ବାବାଜକୁ ଖାଇବାକୁ ନଦବ—ବାବୁ ଶୁଣିଲେ ତମ ରଙ୍ଗ ଛୁଡ଼ିଯିବ ।

ପୂର୍ଣ୍ଣାସ୍ତ୍ର ॥ ବାବୁ ଆଉ କାହାନ୍ତିରେ ଧନ ! ମଦ ନିଶାରେ ତ ଭୂଇଁ କାମୁଡ଼ ପଡ଼ିଚନ୍ତି । ଡର କାହାକୁ ?···ତୁ ଦେଖ୍ —ସେ ବାବାଜ ସାଙ୍ଗରେ ମୁଁ କେମିତି ରଙ୍ଗ କରୁଚି ଦେଖ । ( ଡାକିଲା ) ଆସ ବାବାଜ ମହାରାଜ ଏଇଠିକୁ ଆସ । ( ବାବାଜ ଆସିଲେ )

ବାବାଜ ॥ କଣ ବାବା, ଭୋଜନ ବ୍ୟବସ୍ଥା ହେଲାଣି ?

ପୂର୍ଣ୍ଣାସ୍ତ୍ର ॥ ଆଗେ ବସ ।

( ବାବାଜ ବସିଲେ )

ପୂର୍ଣ୍ଣାଙ୍କ ॥ ହେଇତ ବାବା, ଅନ୍ନଅଛି—ତିଅଣ ନାହିଁ । କଣ ଦେଇ ଖାଇବ ?···ଶୁଖୁଆ ହବ—ଶୁଖୁଆ ?

ବାବାଜି ॥ ଶୁଖାରୁଖା ଯାହାଅଛି—ଦିଅ, ପାଇ ଦେବା ।

ପୂର୍ଣ୍ଣାଙ୍କ ॥ ଶୁଖାରୁଖା ନୁହଁ ହେ—ଶୁଖୁଆ—ମାଛରୁ ଯୋଉ ଶୁଖୁଆ ହୁଏ···

ବାବାଜି ॥ ଓହୋ । ବାବାଜି ବୈଷ୍ଣବ କଣ ମାଛ ଶୁଖୁଆ ଖାଆନ୍ତି ?

ପୂର୍ଣ୍ଣାଙ୍କ ॥ ଚଳିବ ନାହିଁ ତା' ହେଲେ ! ଘର ଅଡ଼ୁଆ ହେଲା ! ଆଚ୍ଛା ଗୋସେଇଁ—ଶାଗୁଆଳି ଚଳିବ ?

ବାବାଜି ॥ ଶାଗୁଆଳି ! ନାଁ ଶୁଣିନୁ କି କେବେ ଖାଇନୁ । କି ଶାଗ ସିଏ ?

ପୂର୍ଣ୍ଣାଙ୍କ ॥ ଭଲ । ଖୁବ ଭଲ ଶାଗୁଆଳି ।

ବାବାଜି ॥ ଦିଅ ବାବା, ଯାହା ଦଉଚ ଦିଅ ।

ପୂର୍ଣ୍ଣାଙ୍କ ॥ ( ରମାକୁ ଏକାନ୍ତରେ ) ଦେଖୁଚ, ମାଛ ଶୁଖୁଆ ଖାଏନାହିଁ—ଶାଗୁଆଳି ଖାଇବ କହୁଚି ।

ରମା ॥ ( ଏକାନ୍ତରେ ) ମାଉଁସକୁ ଯେ ଶାଗୁଆଳି କହନ୍ତି । ଏକଥା ବିଚରା ବୁଝିପାରିଲା ନାହିଁ ।

ପୂର୍ଣ୍ଣାଙ୍କ ॥ ନ ବୁଝିଲାତ ନବୁଝିଲା, ଦୋଷ ତା'ର ମୁଣ୍ଡରେ ରହିଲା···ତୁ ବାବାଜିଙ୍କ ପାଇଁ ପତର ପକା ରମା, ମୁଁ ଆଣେ ।

[ ପୂର୍ଣ୍ଣାଙ୍କ ଭିତରକୁ ଗଲା ଓ ଟିକିଏ ପରେ ଗୋଟିଏ ହାଣ୍ଡିରେ ପଲମ ଢାଙ୍କିକରି ଆଣିଲା ]

ପୂର୍ଣ୍ଣାଙ୍କ ॥ ଆଣିଲି ବାବା, ଏ ହାଣ୍ଡିରେ ପ୍ରସାଦ ଅଛନ୍ତି, ନିଜ ହାତରେ ପରଶି ସେବାକର ।

ବାବାଜି ॥ ଜୟ୍ଯୁ ହେଉ ବାବା ।

[ ବାବାଜି ପଲମ କାଢ଼ି ଦେଲେ । ହାଣ୍ଡି ଭିତରୁ ଗୋଟିଏ ଜୀଅନ୍ତା କୁକୁଡ଼ା ବାହାରି ଆସିଲା ଓ ରବ ଦେଇ ଏଣେ ତେଣେ ଧାଇଁଲା ]

ବାବାଜି ॥ ଏଁ ! ଏ କଣ ହେଲା ! ପ୍ରସାଦ ହାଣ୍ଡି ଭିତରୁ ଜୀଅନ୍ତା କୁକୁଡ଼ା ବାହାରିଲା !!

—ଗୀତ—

ଏ'କି କଲ ପୂଝାରୀ ହେ, ଏ ଅଧର୍ମ କଲ ?
ପ୍ରସାଦ ନାମେ ଜୀଅନ୍ତା କୁକୁଡ଼ା ବଢ଼ିଲ ?

ପୂଝାରୀ ॥ କେମିତିକା ସାଧୁ ଭଲ କି ଧାରା ତୁମର
ମାଗିଲଠ ଶାଗୁଆତ କି ଦୋଷ ଆମ୍ଭର ?

ବାବାଜି ॥ ଶାଗୁଆତ ନୁହେଁ ବାବା ଶାଗର ତିଅଣ
ଅନ୍ନସହ କରଥା'ନ୍ତୁ ଆନନ୍ଦେ ଭୋଜନ ।

ପୂଝାରୀ ॥ ନାହିଁ ବାବା ତୁମ୍ଭେ ଚାହିଁଥିଲ ଶାଗୁଆତ
ଭୋଷ୍ଟ କରଥିଲ ଗଞ୍ଜା କୁକୁଡ଼ାଟେ କାଟି ।
ତୁମ୍ଭେ ଛୁଇଁ ଦେଲକ୍ଷଣି ଜୀଇଁ ସେ ଉଠିଲା
କକ କକ ରବ ଦେଇ ଉଡ଼ି ପଳେଇଲା ।
ଅପାର ମହିମା ତୁମ କେ ପାରବ କଳି
ମଲା ପ୍ରାଣୀ ବଞ୍ଚାଇଲ ଦିଅ ପାଦଧୂଳି ।

ପୂଝାରୀ ॥ ଓହୋ, ଓହୋ—ଏମିତିକା ପ୍ରତ୍ୟକ୍ଷ ଘଟଣା କେବେ ଦେଖା ନଥିଲି । ଏ ବାବାଜି ମଲା କୁକୁଡ଼ାକୁ ବଞ୍ଚେଇ ଦେଲେ !!

ବାବାଜି ॥ ଆରେ, ଆରେ । ଶାଗ ତିଅଣ କହି ଜୀଅନ୍ତା । କୁକୁଡ଼ାଟାଏ ପତରରେ ବାଢ଼ିଦେଲୁ ! ପୁଣି ଏମିତି ମିଛ କଥା ଗୁଡ଼ାଏ କହୁଛୁ । ଆହୁରି ଟାହିଲି କରୁଛୁ ! କ୍ଷୁଧାର୍ତ୍ତକୁ ସତେଇଲୁ ତୁ ।

ରମା ॥ ସତରେ ପୂର୍ଣ୍ଣ ଶ୍ରୀ, ଏ ତୁମେ କଣ କଲ ? ଶେଷକାଳ ବାବାଜିଙ୍କୁ କୁକୁଡ଼ାଟାଏ ପରଶି ସନ୍ତୋଷିଲ ! ଠାକୁର ପିଣ୍ଡାକୁ କୁକୁଡ଼ା ଆଣିଲ ! ଏଥିରେ ଆଉ ଠାକୁରେ ରହିବେଟି ?

ପୂର୍ଣ୍ଣାଶ୍ରୀ ॥ ଯା ଯା ! ତୋ' ଭଲ୍ଲୋକ ଥାଉ । ମୁଁ ଗୋଟାଗୋଟା କୁକୁଡ଼ା ରୋଷ୍ଟ କରେ—ବାବୁ ପାଇ ହଅନ୍ତି । ଆଉ ଆଜି ମୋର ଦୋଷ ହୋଇଗଲା !

ରମା ॥ ଦେଖୁଚନ୍ତି ତ ମହାରାଜ ! ଆପଣଙ୍କୁ ଖାଇବାକୁ ଦେଲାନାହିଁ । ଠାକୁର ପିଣ୍ଡା ମାରିକଲା । ତହିଁରେ ପୁଣି ବାବୁଙ୍କୁ ଦୋଷ ଦଉଚି । ଚାଲନ୍ତୁ ବାବୁଙ୍କୁ ଜଣେଇବା !

ବାବାଜି ॥ ନାହିଁ, ବାବୁଙ୍କୁ ଜଣେଇବା ନାହିଁ । ବାବୁ ଶୁଣିଲେ ତାକୁ ଘରୁ ବାହାର କରିଦେବେ । ଗରିବ ପୂର୍ଣ୍ଣାଶ୍ରୀ ବଚରା ବଡ଼ ଦୁଃଖ ପାଇବ ।...ହଉ ପୂର୍ଣ୍ଣାଶ୍ରୀ ବାବା, ଆମର ଏଇ କେତୋଟି କଥା ମନେ ରଖିବ । କ୍ଷୁଧାର୍ତ୍ତଙ୍କୁ ସନ୍ତୋଷିବ ନାହିଁ—ଅନ୍ନଦାତାର ନିନ୍ଦା କରିବ ନାହିଁ । ଆଉ ବ୍ରାହ୍ମଣ ତୁମେ, ବଡ଼ ହେଲ ବେଳେ ଯେଉଁ ପ୍ରତିଜ୍ଞା କରିଥିଲ--"ମିଥ୍ୟା ଭାଷଣ ନ କର୍ତ୍ତବ୍ୟଂ" ସେ କଥାଟି ଭୁଲିବନାହିଁ । ଏଥିରେ ତୁମର ମଙ୍ଗଳ ହେବ । ହଉ ବାବା, ଆମେ ଯାଉଚୁ । ଦେଖିବା, କୋଉ ମଠ ବା ମନ୍ଦିରରେ ଯଦି ମୁଠାଏ ପ୍ରସାଦ ମିଳେ । ( ପ୍ରସ୍ଥାନ )

ରମା ॥ ( ଅଶ୍ରୁପୂର୍ଣ୍ଣ ନୟନରେ ) ଆହା, କେଡ଼େ ଦୟାଳୁ— କେଡ଼େ ଧର୍ମ୍ମବନ୍ତ ପୁରୁଷ । ଆଉ ଆଉ ବାବାଜି-ମାନେ କେମିତି ଟିକିଏ କଥାରେ ରଗି ଜଳିଯାନ୍ତି । ଏହାଙ୍କର ରାଗ ଅହଙ୍କାର ଟିକିଏ ନାହିଁ । ପୁଣି ତୁମକୁ କଲ୍ୟାଣ କରିଗଲେ । ଏଭଳି ପୁରୁଷଙ୍କୁ ତମେ ଏ ଅବସ୍ଥାରେ ପକେଇଲ । ତମ ଶରୀର ଫାଟିଯିବ ପୂର୍ଣ୍ଣାଶ୍ରୀ ।

ମନ୍ଦାରୀ ॥ ସତରେ, ମୁଁ ଚଣ୍ଡାଳ କ ବୁଦ୍ଧି କଲି ! ତାଙ୍କୁ ସନ୍ଦେହିଲି । ଟାହୁଲି କଲି । ସେ ପଡର ଉପରୁ ଉଠିଗଲେ । ( ଆଖିରେ ଲୁହ ) କେମିତି ତାଙ୍କୁ ଦେଖା କରିବି ! ତାଙ୍କ ଭେଟ ପାଇବି !

❋ ❋ ❋

[ ଏକ ମଠର ଘର । ବାବାଜି ଆସିଲେ ]

ବାବାଜି ॥ ମଠରେ କେହି ଅଛ ବାବା ?

[ ମଠର ଜଣେ ଆଶା ବରଦାର୍ ବୀରସିଂ ଆସିଲି ]

ବୀର ॥ ଦଣ୍ଡବତ ମହାରାଜ । ମୁଁ ଏ ମଠର ଆଶା ବରଦାର ବୀର୍‌ସିଂ ।

ବାବାଜି ॥ ଜୟ ହେଉ ବାବା । କିଛି ଭୋଜନ ମିଳି ପାରିବ ?

ବୀର ॥ ମହନ୍ତ ମହାରାଜ ପଲଙ୍କ ଲଗି ହୋଇଛନ୍ତି । ଏଇ ଅଧିକାରୀ ଆସୁଚନ୍ତି—ତାଙ୍କୁ କୁହ ।

[ ଅଧିକାରୀ ଆସିଲେ । ହାତରେ ଝୁଲି—ଦେହରେ ନାମାବଳି—ମସ୍ତକରେ ତିଳକ ]

ଅଧିକାରୀ ॥ ଗୌରାଙ୍ଗ ହେ—ଗୌରାଙ୍ଗ ହେ ।

[ ଏତିକିବେଳେ ଅନ୍ୟଦିଗରୁ କେହି ଆସିବାର ଦେଖି ଅଧିକାରୀଙ୍କ ମୁହଁ ଆନନ୍ଦ ଓ ପ୍ରତ୍ୟାଶାରେ ଉଜ୍ଜ୍ୱଳ ହୋଇ ଉଠିଲା । ସେ ସେଇ ଦିଗକୁ ଚାହିଁ ରହିଲେ ]

ବାବାଜି ॥ ଜୟ ଜୟକାର ଅଧିକାରୀ ବାବା—

ଅଧିକାରୀ ॥ ( ସେମିତି ଅନ୍ୟଦିଗ୍‌କୁ ଚାହିଁ ) ରୁହ···

ବାବାଜୀ ॥ ( ଟିକିଏ ରହି' ) କ୍ଷୁଧାର୍ତ୍ତ ଅଭ୍ୟାଗତର କଣ ଚର୍ଚ୍ଚା ହବ ?

ଅଧିକାରୀ ॥ ବାହାରେ, ବାହାରେ ବସ ବାବାଜୀ—ଭିତରକୁ କପଟ ଆସିଲ ?

ବାବାଜୀ ॥ ଆଚ୍ଛା ବାବା ।

[ ବାବାଜୀ ବାହାରକୁ ଗଲେ । ଅନ୍ୟ ଦିଗରୁ ତରୁଣୀ ପରିଚାରିକା ମାଳତୀ ଆସିଲା । ଅଧିକାରୀଙ୍କ ମୁହଁରେ ହସଫୁଟି ଉଠିଲା । ]

ଅଧିକାରୀ ॥ ଆଜି ତୋ'ର ଏତେ ଡେରି କାହିଁକି ଲୋ ମାଳତୀ ?

ମାଳତୀ ॥ କାହିଁକି ମ ! ମୁଁ ତ କେତେବେଳୁ ଆସିଲିଣି ।

ଅଧିକାରୀ ॥ ଏଁ !! କେତେବେଳୁ ଆସିଲୁଣି—ଆଉ ମୁଁ ତୋତେ ଦେଖିନାହିଁ । କୋଉଠି ଥିଲୁ ?

ମାଳତୀ ॥ ( ହସ ହସ ମୁହଁ ) ମହନ୍ତଙ୍କ ପାଖରେ ଥିଲି ପରା ।

ଅଧିକାରୀ ॥ ( ଖୁସି ହୋଇ ) ସତେ ! କଣ କରୁଥିଲୁ ?

ମାଳତୀ ॥ ( ଭ୍ରୂଲତା ନଚାଇ ) ସେବା ।

ଅଧିକାରୀ ॥ ( ଆଗ୍ରହରେ ) କି ସେବା ?

ମାଳତୀ ॥ ଉଁ ! ଗୁପ୍ତପରି ହୋଇ ଯାଉଚନ୍ତି—କଣ ଜାଣି ନାହାନ୍ତି !!

ଅଧିକାରୀ ॥ କହ···

ମାଳତୀ ॥ —ଗୀତ—

କାହିଁକି ହେ ଅଧିକାରୀ
ହଉଚ ଏତେ ପଚାରି
ମହନ୍ତଙ୍କ ସେବା ମହନ୍ତେ ଜାଣନ୍ତି
ତୁମେ କିଆଁ ହୁଅ ଘାରି ।୧।

[ ଏ କଥାରେ ମାଳତୀ ଅପେକ୍ଷା
ଅଧିକାରୀ ଆହୁରି ଖୁସି ହୋଇ ଉଠିଲେ ]

ଅଧିକାରୀ ॥ ଆଛ, ଆଚ୍ଛା, ଭଲ କଥା—ଖୁସିର କଥା । ହଁ, କହୁଛି—ମହନ୍ତ ମହାରାଜ ତୋତେ କଣ ଦେଇଛନ୍ତି ?

ମାଳତୀ ॥ ଦେଇଚନ୍ତି ।

ଅଧିକାରୀ ॥ କଣ ନା··· ? ଦେଇଚନ୍ତି !! ଆଲୋ କଣ ଦେଇଚନ୍ତି ?

ମାଳତୀ ॥ ଭଲ ଜିନିଷ—ଆଗୁ ଜିନିଷ—ମନଲାଖି ଜିନିଷ ।

ଅଧିକାରୀ ॥ ଆରେ ଆରେ, ତୋ' ପଣତ ତଳେ କଣ ଏମିତି ଲୁଚେଇ ଧରିଚୁ ଦେଖି ।

[ ମାଳତୀ ହସି ହସି ଖଣ୍ଡେ ନୂଆ ଶାଢ଼ୀ
ପଣତ ତଳୁ ବାହାର କରି ଦେଖେଇଲା ]

ମାଳତୀ ॥ ଏଇ ଦେଖ, ଏଇ ଶାଢ଼ୀ ।

ଅଧିକାରୀ ॥ ବାହ୍-ବା ! ଏ ଶାଢ଼ୀ ! କାହିଁରେ କଣ···ସାତ ଆଠ-ଟଙ୍କା ଦାମ୍ ହବ । (ଖୁସିରେ) ଏ କାଠର ଶାଢ଼ୀଟି ବାବୁ ସୁବଳ ପଟ୍ଟନାୟକଙ୍କ ଝିଅ ବୋହୂ ପିନ୍ଧିବାକୁ ପାଉ ନଥିବେ !

ମାଳତୀ ॥ ଶାଢ଼ୀ ଖଣ୍ଡିକ ଧରେଇ ଦେଇ ମହନ୍ତେ ମତେ କଣ କହିଲେ ଜାଣ ?

ଅଧିକାରୀ ॥ କଣ ଠିକଏ ଶୁଣେ ।

ମାଳତୀ ॥ —ଗୀତ—

ଏ ଗୋଲ ନଗରୀ ଶାଢ଼ୀ
ଶୁଆରଙ୍ଗ ନାଲି ଧଡ଼ି
ମୋର ଏ ଚହଟ ଦେହରେ କୁଆଡ଼େ
ପିନ୍ଧୁ ପିନ୍ଧୁ ଯିବ ଜଡ଼ି ।୨।

[ ଗୀତ ଶେଷ ଆଡ଼କୁ ମାଳତୀ ହସି
ହସି ଗଡ଼ି ଯାଉଥାଏ ]

ଅଧିକାରୀ ॥ ହଉ ଆ—ମୋ ରାଣୀ ଟା...

ମାଳତୀ ॥ କୁଆଡ଼େ ?

ଅଧିକାରୀ ॥ (ଈଷତ୍ ନମ୍ରସ୍ୱରରେ ) ସେଇଠେଇ ଘର ଆଡ଼େ ଆ—
ପ୍ରସାଦ ପାଇବୁ ।

ମାଳତୀ ॥ ମୁଁ ଘରକୁ ଯାଉଚି । ଘରେ ଶାଢ଼ୀଖଣ୍ଡିକ ରଖି ଦେଇ
ଆସିବି ।

ଅଧିକାରୀ ॥ ମ ! ତୋ’ ଶାଢ଼ୀ କିଏ ଛଡ଼େଇ ନେଉଚି କି ? ପ୍ରସାଦ
ଶୁଖିଯିବ—ଆଗେ ପ୍ରସାଦ ପାଇବୁ ଆ—ପଛେ
ଘରକୁ ଯିବୁ ।

ମାଳତୀ ॥ ( ରହି ରହି ) ତେବେ ପ୍ରସାଦ ଦିଅ—ଘରକୁ
ନେଇ ଯିବି । ମୁଁ ଅଭିକା ଖାଇବି ନାହିଁ—ଭୋକ
ନାହିଁ ।

ଅଧିକାରୀ ॥ କହନ କାହିଁକି ଭୋକ ନାହିଁ ? ମୋ ରାଣୀଟି, ସତ
କହିବୁ ।

ମାଳତୀ ॥ ( ମୁହଁ ତଳକୁ କରି ) ମୁଁ ପିଠା ହଓଟି ଖାଇଛି ।

ଅଧିକାରୀ ॥ ( ଆଗ୍ରହରେ ) କିଏ—ମହାନ୍ତ ପିଠା ଖାଇବାକୁ
ଦେଲେ ?

ମାଳତୀ ॥ ( ଲାଜ ଲାଜ ଭାବରେ ) ହଁ ସବୁ । ଲାଜର କଥା ।
ମହାନ୍ତଙ୍କ ପାଖରେ ଖାଇବି କ’ଣ ?...ମୁଁ ଖାଉ
ନଥାଏ ।

ଅଧିକାରୀ ॥ ସେଇଠୁ ?

ମାଳତୀ ॥ —ଗୀତ—

ଯେତେ କଲ ନାହିଁ ନାହିଁ
ଜମା ତ ମାନଲେ ନାହିଁ
ମିଠା କଥା କହି ପିଠା ବଉଣ୍ଟିକୁ
ନଜେ ସେ ଦେଲେ ଖୁଆଇ । ୩ ।

ଅଧିକାରୀ ॥ ଆହା ହା ! ମାଳତୀ ଲୋ, ମହାନ୍ତ ତୋତେ ପିଠା ଖୁଆଇ ଦେଲେ, ଇଏ ତୋ ଭାଗ୍ୟ ନୁହେଁ—ମୋ ଭାଗ୍ୟ ! ହଉ, ଆ ମୋ ସାଙ୍ଗରେ । ଅଳ୍ପ ମୁଠିଏ ପ୍ରସାଦ ପାଇବୁ—ଆଉ ମୁଠିଏ ତୋ ମା' ପାଇଁ ନେଇଯିବୁ । ମୋ ରାଣଟି, ଆ !

ମାଳତୀ ॥ ଚାଲିମ ଯାଉଛି । ଏତେ ରାଣ କାହିଁକି ପକଉଚ—ଚାଲ ।

ଅଧିକାରୀ ॥ ଗୌରାଙ୍ଗ ହେ...... (ଡାକଲେ) ବୀର ସିଂ ( ବୀର ଆସିଲ ) ସେ ବାବାଜୀଙ୍କୁ କହିଦବୁ, ପଙ୍ଗତ ବର୍ଡ଼ି ଗଲଣି—ଆଉ କଚ୍ଛୁ ମିଳବ ନାହିଁ...ଗୌରାଙ୍ଗ ହେ... (ମାଳତୀଙ୍କୁ) ଆ ।

ମାଳତୀ ॥ ଚାଲ ।

[ ମାଳତୀ ଓ ଅଧିକାରୀ ଭିତରକୁ ଗଲେ ]

ବୀର ॥ ଓହୋ—ଓହୋ...ଏ ସଂସାରରୁ ଧର୍ମ ଉଠିଗଲ । ( ଡାକଲେ ) ବାବାଜୀ ମହାରାଜ ।

[ ବାବାଜୀ ଆସିଲେ ]

ବାବାଜ ॥ ଆଶା ବରଦାର ବାବା, ଅଧିକାରୀଏ କଣ କହିଲେ ?

ବୀର ॥ ପ୍ରସାଦର ଅଧିକାରୀ ସେ । ତାଙ୍କ ହାତରେ ସବୁ । ମାତ୍ର ସେ ମନାକରି ଦେଲେ । ଭୋକଲା ବାବାଙ୍କ

ଆପଣ । ଆପଣଙ୍କୁ ଉପାସ ରଖିଲେ, ଦୁଃଖରେ ମୋ' ହୃଦ ଫାଟି ଯାଉଛି ।

ବାବାଜି ॥ ତା' ହେଲେ ଆମେ ନଗଣ ହୋଇ ଫେରିଯିବା ବାବା, ?

ବୀର ॥ ଅଧିକାରୀଏ ତ ମାଳଙ୍କୁ ନେଇ ଶେଷ ଘରକୁ ଗଲେଣି । ସେଠିକି ପୁଣି ଜାମୁନ୍ନା ବୈଷ୍ଣବାଣୀ ଆସିବ । ଆଜି ଗୃର ପାଞ୍ଚ ଜଣ ସ୍ତ୍ରୀଲୋକ କଂସାଧର ବସିଚନ୍ତି । ସେମାନେ ମଠର ଆଶ୍ରିତା । ପୁଣି ସବୁ କାମକୁ ଦିନ ରାତି ହାଜର । ସେମାନଙ୍କ କଥା ନବୁଝି ଅଧିକାରୀ ଆପଣଙ୍କ କଥା ବୁଝିବେ କେମିତି ? ( ଅନ୍ୟ ଦିଗକୁ ଚାହିଁ ) ଏଇ, ମହନ୍ତ ମହାରାଜ ବଜେ ହେଲେଣି । ତାଙ୍କୁ ଆପଣଙ୍କ କଥା କହି ଦେଖେଁ । ଆପଣ ବସନ୍ତୁ ।

[ ଭିତରକୁ ଗଲା ]

ବାବାଜି ॥ ଏ ବଦରାଟି ମୋ' ପାଇଁ ଖୁବ୍ କଷ୍ଟ କରୁଚି ।

[ ହାତରେ ଝୁଲା ଓ ମହନ୍ତ-ଯୋଗ୍ୟ ସାଜରେ ସଜ୍ଜିତ ସ୍ଥୂଳକାୟ ମହନ୍ତ ଈଷତ୍ କ୍ଷିପ୍ର ଗତି ଓ କରୁଣା ଅନ୍ୱେଷଣ ଭଙ୍ଗୀରେ ଆସିଲେ ]

ମହନ୍ତ ॥ କାହିଁ ବୈଷ୍ଣବ କାହିଁ ? ଏଁ ? ବୈଷ୍ଣବ କାହିଁ ?

ବାବାଜି ॥ ଜୟ ଜୟ କାର ମହନ୍ତ ମହାରାଜ ।

ମହନ୍ତ ॥ ଆରେ ରୁହଦେ !···ବୈଷ୍ଣବ କାହିଁ ? ବୀର ସିଂ ଏ ବୈଷ୍ଣବଟା କଏ ?

ବୀର ॥ ସେଇତ ମହାରାଜ !

ମହନ୍ତ ॥ କଣ ସେଇତ ? ତୁ ପରା ଆମ୍ଭଙ୍କୁ କହିଲୁ ଜଣେ ଉତ୍ତମ ବୈଷ୍ଣବ ଆସି ଖାଇବାକୁ ମାଗୁ ଛି । ତୋ କଥା ଶୁଣି ଆମ୍ଭେ ତରବର୍‌ରେ ଧାଇଁ ଆସିଲୁ ।

ୱାର ॥ ନାଇଁ ମହାରାଜ । ବୈଷ୍ଣବୀ କହୁନାହିଁ । ମୁଁ କଣାଇଲି ଜଣେ ଉତ୍ତମ ବୈଷ୍ଣବ ଆସି ଖାଇବାକୁ ମାଗୁଛି ।

ମହନ୍ତ ॥ (ରାଗି) ବାଃ ! ତୁ କହୁଲୁ ବୈଷ୍ଣବ—ଆମକୁ ଶୁଭିଲା ବୈଷ୍ଣବୀ । ଜାଣୁ ତୋ'ର ଏକଥାରେ ଆମ ଅବସ୍ଥା କେମିତି ବାରଗଣ୍ଡା ଦୁଇକଡ଼ା ହୋଇଗଲା ? ତୁ ଆମକୁ ଭୁଲ୍ବାଟରେ ଦଉଡ଼େଇଲୁ । ହର୍ଷରେ ବିଷାଦ ଭରିଗଲା ॥

ୱାର ॥ ନାଇଁ ମହାରାଜ, ମୁଁ ବଇଷ୍ଣବୀ କହୁନାହିଁ ।

ମହନ୍ତ ॥ ମାତ୍ର ଆମ କର୍ଣ୍ଣକୁ ସେଇଟା ଶୁଣାଗଲା ।

—ଗୀତ—

ବଇଷ୍ଣବୀ ନାମ ଯେବେ କର୍ଣ୍ଣରେ ପଡ଼ିଲାରେ
ଉତ୍ତମ ବୈଷ୍ଣବୀ ରୂପ ଆଖିରେ ନାଚିଲାରେ । ୧ ।
ଆଖିରୁ ସେ ସଖୀରୂପ, ଚିତ୍ତକୁ ଛୁଇଁଲାରେ
( ମନ୍ତ୍ର ) ଏଇଟାକୁ ଦେଖି ମନ ଜଳି ପୋଡ଼ି ଗଲାରେ । ୨ ।

ୱାର ॥ ଏଇ ବାବାଜୀକୁ ଦେଖି ସବୁ ପୋଡ଼ିଗଲା ?

ମହନ୍ତ ॥ ହଁ । ···ଏ ମନ ଯାହା ଜଳି ପୋଡ଼ି ଯାଇଛି, ତାକୁ ସଜାଡ଼ିବାକୁ ହେବ ।

ୱାର ॥ ( କାନ୍ଦି ) ମତେ କାହିଁକି ମରଣ ନହେଲା ! ମୋ ମହନ୍ତ ମହାରଜାଙ୍କ ମନ କେମିତି ସଜଡ଼ା ହେବ ?

ମହନ୍ତ ॥ ଶୁଣ୍ କେମିତି ସଜଡ଼ା ହେବ ।

—ଗୀତ—

ଭଲ ଦେଖି ଗଞ୍ଜା ଆଣି ଚିଲମ ସାଜବୁରେ
ଗୋଲାପ ପାଣିରେ ସେହି ଗଞ୍ଜା ଦଳୁଥିବୁରେ । ୩ ।
ପାଚକ ପାଣି କରିବୁ ଭାଙ୍ଗ ଘୋଟି ଘୋଟିରେ
ମସଲା ବାସ ଯେମିତି ଉଠିବ ଚହଟିରେ । ୪ ।

ମହନ୍ତ ॥ ବୁଝିଲୁରେ ଓଲୁ ?

ଷାଣ୍ଢ ॥ ବୁଝିଲି ଆଜ୍ଞା ।

ମହନ୍ତ ॥ ଆଉ କଣ କରିବୁ ?

ଷାଣ୍ଢ ॥ ଆପଣେତ ଗଞ୍ଜେଇ ସେବା ପାଚକ ପାଣି ସେବା କଲେ ଉପରବେଳା ଜଳଖିଆ ପାଇଁ ଭଲ ଭଲ ମିଠା ବନ୍ଦୋବସ୍ତ ହୁଏ ?।

ମହନ୍ତ ॥ ହଁ, ହରିଦାସକୁ କହିଦେ—ଆଚ୍ଛା ଆଚ୍ଛା ମିଠା ତିଆରି କରିବ—

—ଗୀତ—

ସରପୁଳି କ୍ଷୀରପୁଳି ରସକେଳି ଖଜାରେ
ମୋହନ ଭୋଗରେ ଥାଏ ଜଳଖିଆ ମଜାରେ ।୫।

(ଆଉ) ଆସିବ ଜାମୁମଣିଦାସୀ ବଇଷ୍ଣବୀ ଯେବେରେ
ତଡ଼ତେ ପଠେଇଦେବୁ ତାକୁ ମୋହ ଠାବେରେ ।୭।

ମହନ୍ତ ॥ ପ୍ରସାଦ ପାଇଁ ଜାମୁମଣି ଦାସୀ ବଇଷ୍ଣବୀ ଆସିଲାଣି ?

ଷାଣ୍ଢ ॥ ଆସିନାହିଁ ମହାରାଜ—ଆସିବ । ଅଧିକାରୀଙ୍କ କଡ଼ା ହୁକୁମ, ଜାମୁମଣି ଦାସୀ ପାଇଁ ପ୍ରସାଦ ଅଲଗା ବଢ଼ା ହୋଇ ରହିଥିବ ।

ମହନ୍ତ ॥ ମୋ’ ମଠର ଅଧିକାରୀ ସେ—ସେ ଠିକ୍ ଠିକ୍ କାମ କରୁଛି ।···ହଉ, ଜାମୁମଣି ଆସିଲେ ମୋ’ ପାଖକୁ ପଠେଇ ଦବୁ ।

ଷାଣ୍ଢ ॥ ପଠେଇ ଦେବି ମହାରାଜ ।···ଆଉ···ଆଉ···

ମହନ୍ତ ॥ ଆଉ ଆଉ କଣ ହଉଛୁ ?

ଷାଣ୍ଢ ॥ ଅତି ଉତ୍ତମ ବାବାଜିଟିଏ—ତାକୁ ପ୍ରସାଦ ମିଳିବ ନାହିଁ ?

ମହନ୍ତ ॥ ନାଇଁ ମିଳିବ ନାଇଁ । ତାକୁ ମନା କରିଦେ । ଏ ଗ୍ରାମକ ଏତେ କୁଆଡ଼ୁ ଆସୁଚନ୍ତି ? ରଖେଇ ଦେବେ ନାଇଁ ଆଉ ।

ବୀର ॥ ଗ୍ରେକଲ ପେଟରେ ବସିଚ । ତାକୁ କଣ କହିବ ?

ମହନ୍ତ ॥ ଆରେ ଓଲୁ, ବୁଝିପାରୁନୁ କଣ କହିବୁ ?

—ଗୀତ—

ମଠେ ମୋର ଲାଗିନାହିଁ ହରଲୁଟ୍ ହାଟରେ,
ଦେଖେଇଦେ ବାବାଜିଙ୍କୁ ନାକସିଧା ବାଟରେ ।ଟା

ମହନ୍ତ ॥ ବୁଝିଲୁ ?

ବୀର ॥ ବୁଝିଲି ମହାରାଜ ।

ମହନ୍ତ ॥ ଆଉ ଦେଖ୍ । ଜାମୁନା ଦାସୀ ବୈଷ୍ଣବୀର ପ୍ରସାଦ ଯେମିତି ଆମ କାହା ପତରରେ ନ ପଡ଼େ । ଆମେ ପଲଙ୍କୁ ବଜେ ହଉଚୁ ।

ବୀର ॥ ବଜେ ହୁଅନ୍ତୁ ମହାରାଜ ।

[ ମହନ୍ତ ଭିତରକୁ ଗଲେ । ବୀର ସେଇ ଆଡ଼କୁ ଗୃହିଁ ରହିଥାଏ । ସେ ଦୁଃଖରେ ଏକା- ବେଳେକେ ଭାଙ୍ଗି ପଡ଼ିଚ । ତା ଆଖିରେ ଲୁହ। ପ୍ରସନ୍ନ ବଦନରେ ବାବାଜି ଆଗେଇ ଆସିଲେ ]

ବାବାଜି ॥ ଆଶାଦାର ବାବା—ଆମେ ଏବେ ବିଦାୟ ନେଉଛୁ ।

ବୀର ॥ ମୋ ଦୋଷ ଧେନବେ ନାହିଁ ବାବାଜି ମହାରାଜ । ମୁଁ ଅକାରଣେ ଆପଣଙ୍କୁ ଆଶା ଦେଇ ବସେଇ ରଖିଲି । ଦେଖିଲେତ, ମୋ କଥା କେହି ଶୁଣିଲେ ନାହିଁ । ସମସ୍ତେ ନିଜ ନିଜ ଧନ୍ଦାରେ ଅଛନ୍ତି ।

ବାବାଜି ॥ ଏଥିରେ ତୋର କିଛି ଦୋଷ ନାହିଁ ବାବା । ତୁ ତ ଆମ ପାଇଁ ବହୁତ ଚେଷ୍ଟା କରିଛୁ । ମାତ୍ର ଏ ମଠରେ ଯୋଉ ଦୁରବସ୍ଥା ଖେଳିଚି, ତୋ' ପରି ନିରୀହ ଉତ୍ତମ ମଣିଷ ଏଠି ଚଳିବ କେମିତି ? ଏ ମଠ ତୋ'ର ଯୋଗ୍ୟ ସ୍ଥାନ ନୁହେଁ ।

ବୀର ॥ ଗରିବ ସଂସାରୀ ଲୋକ ମୁଁ—ପିଲାକବିଲାଙ୍କ ଚିନ୍ତା'ଅଛି ।
ସେଥିପାଇଁ ମଠରେ ଗୃହକର୍ମ କରି ପଡ଼ି ରହିଚି ।
ଆପଣେ ଭୋକିଲା ରହିଲେ । ପାଖରେ ମୋର ଦୁଇଟି
ପଇସା ଅଛି । ଯଦି ଆଜ୍ଞା କରିବେ, ଏ ପଇସା
ଦୁଇଟିରେ ଭୋଜନ ସାମଗ୍ରୀ କିଣି ଆଣିବି ।

ବାବାଜି ॥ ( ହସି ) ପାଗଳ···ପାଗଳ ! ତୋ' ପଇସା ତୋ'
ପିଲାଙ୍କ ପାଇଁ ଥାଉ । ଆମେ ବାବାଜି ଲୋକ—ଆମର
କାର୍ଯ୍ୟ ହେଲା, ପ୍ରଭୁଙ୍କ ନାମ ଭଜନ କରିବୁ—ସଂସାର
ବାସିଙ୍କୁ ଉତ୍ତମ ମାର୍ଗରେ ଚଳେଇବୁ । ସବୁବେଳେ
ଭୋଜନ ଖୋଜି ହେଲେ, ଭଜନପାଇଁ ବେଳ ମିଳିବ
ନାହିଁ ।···ଆଜି ଭୋଜନ ବେଳ ଗଡ଼ିଗଲାଣି—କ୍ଷୁଧା
ମେଣ୍ଟି ଗଲାଣି ।···ଏ କଣ ବୀର ସିଂ, ତୋ' ଆଖିରୁ
ଏମିତି ଧାର ଧାର ଲୁହ ଗଡ଼ୁଛି କାହିଁକି ?

ବୀର ॥ ଆପଣ ବାବାଜୀ । ମାତ୍ର ଆପଣଙ୍କ ହାତରେ ଝୁଲା
ନାହିଁ-ଆପଣ ମାଳି ଗଡ଼ାଉ ନାହାନ୍ତି—ଖାଇବାର
ଲୋଭତକ ଆପଣ ଛାଡ଼ିଦେଲେଣି । କାହିଁ, ଆପଣଙ୍କ
ମୁହଁରୁ ପଦେ ମନ୍ଦକଥା ତ ବାହାରୁ ନାହିଁ ।···ଆଉ
ଆମ ମହନ୍ତ ମହାରାଜ, ଅଧିକାରୀଏ, ହରିଗୋବିନ୍ଦ
ଦାସେ ରାଧେ ରାଧେ ଗୌରାଙ୍ଗ ଗୌରାଙ୍ଗ କହି—ଝୁଲା
ଭିତରେ ମାଳି ଗଡ଼େଇ ସରପୁଳି କ୍ଷୀରପୁଳି ଖୋଜୁଚନ୍ତି
କାହିଁକି ? ମାଳଞ୍ଚିଏ କି ମାତାଜୀଟିଏ କି ବୈଷ୍ଣବୀଟିଏ
ନହେଲେ ତାଙ୍କ ମନତଗତ ବଗିଡ଼ି ଯାଉଚି କାହିଁକି ?
କହୁଚନ୍ତି କଣନା—ପରକୀୟା ପ୍ରୀତି କୁଆଡ଼େ ତାଙ୍କର
ଗୋଟିଏ ମତ—ଗୋଟିଏ ବିଧି । ଏହା କଣ ସତ
ମହାରାଜ ?

ବାବାଜି ॥ ସବୁ ଭୁଲ୍-ଭଣ୍ଡାମି । ନଚେ ଶ୍ରୀଗୌରାଙ୍ଗଙ୍କ ପରି
ଭଗବତ୍ ପ୍ରେମୀ ପୁରୁଷ କାହିଁ ନଥିବେ । ତାଙ୍କରତ
କେହି ପରକୀୟା ନ ଥିଲେ । ଏତିକରୁ ସବୁ ବୁଝି

ଚାରୁଥିବୁ ।···ଯିଏ ମାଳ ଗଢ଼ଉଛୁ, ଗଢ଼ଉ । ମାତ୍ର ମାଳ ଗଢ଼େଇବା ହାତରେ ନଥାଏ, ଥାଏ ମନରେ ।

ସାର ॥ ବୁଝିଲି ମହାରାଜ । ସବୁ ବୁଝିଗଲି । ମୋ' ମନ ଆଜ ସଫା ହୋଇଗଲା । ମହାତ୍ମା ଆପଣ···ଆପଣ ଏବେ ଯିବା ହୁଅନ୍ତୁ । ପ୍ରଣାମ ।

ବାବାଜ ॥ ମଙ୍ଗଳ ହଉ ବାବା—ମଙ୍ଗଳ ହଉ ।

(ବାବାଜଙ୍କର ପ୍ରସ୍ଥାନ)

* * *

[ ଗ୍ରାମ ସୀମାନ୍ତ ନଦୀ କୂଳସ୍ଥ ଏକ ଛୋଟାରେ ବାବାଜ ଧ୍ୟାନ ମଗ୍ନ ଅବସ୍ଥାରେ ବସିଚନ୍ତି । ସମୟ—ସୂର୍ଯ୍ୟାସ୍ତ । ······ ଧୀରେ ସମୟ ଅତିବାହିତ ହୋଇ ସନ୍ଧ୍ୟାକାଳ ନଇଁ ଆସିଲା । ବାବାଜଙ୍କର ଧ୍ୟାନ ଭଗ୍ନ ହେଲା । ··· ପାଖରେ ଥିବା କମଣ୍ଡଳରୁ ସେ କିଛି ଜଳ ପାନ କଲେ । ତା' ପରେ ଝିକମିକ ପଥରରୁ ଅଗ୍ନି ସଂଗ୍ରହ କରାଇ ଦୀପଟିଏ ଜାଳିଲେ । ସ୍ଥାନଟି ବେଶ୍ ଆଲୋକିତ ହୋଇ ଉଠିଲା । ଟିକିଏ ପରେ ଈଷତ୍ ସଙ୍କୋଚ ତଥା ଭକ୍ତିଭାବ ସହ ସେଠିକି ଆସିଲେ ଦୁଇଟି ସ୍ତ୍ରୀ ଲୋକ—ଜେମୀ ଓ ରାଧି । ଜେମୀ ମଧ୍ୟ-ବୟସ୍କା । ରାଧି ତରୁଣୀ ଓ ସୁନ୍ଦରୀ । ସେ ଦୁହେଁ ହଉଛନ୍ତି "ସଂଗୀତ ଜନ"—ଅର୍ଥାତ୍ ଆସରରେ ସଂଗୀତ ଗାନ କରି ସେମାନେ ଜୀବିକା ଅର୍ଜନ କରନ୍ତି । ଗୋଟିଏ ପରିପୂର୍ଣ୍ଣ ଫଳ ପୁଷ୍ପର ଡାଲା ବାବାଜଙ୍କ ପାଦ ପାଖରେ ରଖି ଭକ୍ତି ସହକାରେ ଦୁହେଁ ପ୍ରଣାମ କଲେ ]

ବାବାଜି ॥ ମଙ୍ଗଳ ହେଉ ମାତା । କିଏ ତୁମେ ମାନେ ?

ଜେମୀ ॥ ଆମେ—ମୁଁ ଜେମୀ, ଇଏ ରାଧି । ଆମେ ସଙ୍ଗୀତ ଜନ । ସଙ୍ଗୀତ ବ୍ୟବସାୟ କରି ପେଟ ପୋଷୁ ।

ବାବାଜି ॥ ଓ, ସଙ୍ଗୀତ ଜନ ! ......ହଁ, କି କି ସଙ୍ଗୀତ ଜାଣ ?

[ ଏ ଦୁହେଁ ପରସ୍ପରକୁ ଚାହିଁଲେ ]

ଆଚ୍ଛା, ତୁମେ ଭଜନ ଜାଣ ?

ରାଧି ॥ 'ଜାଣୁ ମହାରାଜ ।

[ ରାଧି କଥାରେ ବାବାଜି ସନ୍ତୁଷ୍ଟ ହେଲେ ]

ବାବାଜି ॥ ବର୍ତ୍ତମାନ ସନ୍ଧ୍ୟା କାଳ । ଭଜନଟିଏ ଗାଇ ଶୁଣେଇ ପାରିବ ?

ଦୁହେଁ ॥ ହଁ ।

—ଭଜନ—

ବିଶ୍ୱପତି,

କି ଦେଇ ତୋଷିବି ତୁମ୍ଭ ମତି ହେ । ୦ ।

ଯେଣିକି କରଇ ମୁହିଁ ନିରୀକ୍ଷଣ
ତେଣେ ଦେଖେ କିଛି ନାହିଁ ମୋର ଧନ
ଅନ୍ନ ଜଳ ଫଳ ଫୁଲ ଜୀବ ଜନ
ସବୁତ ତୁମ୍ଭ କୀରତି ହେ । ୧ ।

କରୁଣା ସାଗର ନାମ ଯେ ତୁମ୍ଭର
ଏ ଅଧମ ପ୍ରତି ଥରେ କୃପାକର
ମୁଁ ତ ଅକିଞ୍ଚନ ଘେନ ମୋର ଦାନ
ହେଉ ଏ ପାପୀର ଗତି ହେ । ୨ ।

ବାବାଜି ॥ ବାଃ । ଭଲ ଭଜନ । ଭଲ ଗାଇଲ । ଏବେ କୁହ କୁଆଡ଼େ ଆସିଛ ?

ଜେମୀ ॥ ଏ ବୁଢ଼ୀର ଦେହ ଭଲ ରହୁ ନାହିଁ । ବେମାର, ସେଇଥି ପାଇଁ ଆସିଚୁ ।

ବାବାଜ ॥ ଆମେ ତ ବଇଦ ନୋହୁଁ । ଏଠିକ କାହିଁକ ଆସିଚ ? ବଇଦ ପାଖକୁ ଯାଅ ।

ଜେମୀ ॥ ବଇଦ କ'ଣ କରବ ? ଆପଣଙ୍କ ଆଜ୍ଞା ହେଲେ, ଆପଣଙ୍କ ମହିମାରେ ରୋଗ ଛାଡ଼ ପଳେଇବ ।

ବାବାଜ ॥ ଆମେ ସାମାନ୍ୟ ମନୁଷ୍ୟ—ଆମର ମହିମା କାହୁଁ ଆସିବ ? ମହିମା ପରମେଶ୍ୱରଙ୍କର । ତାଙ୍କର ଆଜ୍ଞାରେ ଏ ଜଗତ ସୃଷ୍ଟି ହୋଇଚ । ମନୁଷ୍ୟତ ସାମାନ୍ୟ ଘାସ ଗଛଟିଏ ସୃଷ୍ଟି କର ପାରବ ନାହିଁ ।

ଜେମୀ ॥ ନାହିଁ ପର୍ଭୁ, ଆପଣ ସମାନ୍ୟ ମଣିଷ ନୁହନ୍ତ । ଆପଣଙ୍କ କରଣୀ କାହିଁରେ କଣ ।

ବୁଢ଼ୀ ॥ ଆମକୁ ଭୁଲେଇ ହଅନ୍ତୁ ନାଇଁ । ଆମେ ଆପଣଙ୍କ କଥା ସବୁ ଶୁଣିଚୁ ।

ବାବାଜ ॥ କଣ ଶୁଣିଚ ? କଏ କଣ ତମକୁ କହିଚ ?

ବୁଢ଼ୀ ॥ ସମସ୍ତେ—ସମସ୍ତେ କୁହା କୁହି ହଉଚନ୍ତ ।

ଜେମୀ ॥ —ଗୀତ—

ତୁମେ ତ ସିଦ୍ଧ ପୁରୁଷ ଗୋ
ତୁମେ ତ ମହିମାମଣି
ନ ପାରନ୍ତ ଯାହା ଗୁଣୀ ମହା ମହା
( ସେଠି ) କାଟଇ ତମ କରଣୀ । ୧ ।

ବୁଢ଼ୀ ॥ ଏ କଥା ଲୁଚନ ଆଉ ଗୋ
ଗାଁ ସାରା ହାଉ ହାଉ ।
ତୁମ ହାତ ଲାଗି ମଲା କୁକୁଡ଼ାଟା
ଉଡ଼ ଗଲା ଚୁହୁଁ ଚୁହୁଁ । ୨ ।

ଦୂହେଁ ॥ ଆନନ୍ଦ ପଣ୍ଡା ପୁଷ୍ଟାସ୍ତ ଗୋ
ଦେଇଥିଲି ଗୁଣ୍ଡିକରି
ସେ କୁକୁଡ଼ା ବଞ୍ଚି ପୁଷ୍ଟାସ୍ତ ନାକକୁ
ଚିରି ଦେଲି ନଖ ମାରି । ୩ ।

[ ଏକଥା ଶୁଣି ବାବାଜି ହୋ ହୋ ହୋଇ ହୋଇ ହସୁଥାନ୍ତି ]

ଜେମୀ ॥ ଏ କଥା ସୁବଳ ବାବୁଙ୍କ ଘରେ ଘଟି ନାହିଁ ମହାରାଜ ?

ରାଧି ॥ ପୁଷ୍ଟାସ୍ତ ରନ୍ଧା କୁକୁଡ଼ା ଦେଲି—ମହାରାଜ ଛୁଇଁଲେ କ୍ଷଣି କୁକୁଡ଼ା ବଞ୍ଚି ଉଠିଲା, ଏ କଥା ସତ ନୁହେଁ ?

ବାବାଜି ॥ ମିଛ—ମିଛ—ମିଛ—ସବୁ ମିଛ

ଜେମୀ ॥ ଏତେ ଗୁଡ଼ାଏ ଲୋକ ମିଛ କଥା କହିବେ କେମିତି ? ଗୁରୁ ଆଜ୍ଞେ ରଟି ଗଲାଣି ।

ରାଧି ॥ ଆମେ ନୀଚ ଶ୍ରେଷ୍ଠ ଜାତି ବୋଲି ଘୃଣା କରୁଚନ୍ତି କି ? ଆମେ ଅତି ଦୁଃଖୀ, ନିରାଶ୍ରିତା । ଆମର କୁଳମାନ କିଛୁନାହିଁ । ( ପାଦ ତଳେ ପଡ଼ି ) ଦୋହି ମହାରାଜ— ଆପଣଙ୍କ କରଣୀ ବଳରେ ମୋ' ବେମାର ଭଲ କରି ଦିଅନ୍ତୁ ।

ଜେମୀ ॥ ହଁ ମହାରାଜ । ଆମେ ନିଶ୍ଚେ କିଛୁ ଭୋଗ ଖର୍ଚ୍ଚ ଦେବୁଁ ।

ବାବାଜି ॥ ତୁମେ ଆଗେ ଉଠ ମାତା-ଉଠ [ ରାଧି ଉଠି ବସିଲ ] ଶୁଣ । ଆମକୁ କିଛୁ କରଣୀ ଜଣାନାହିଁ । ଆଉ, କରଣୀ ବୋଲି କିଛୁ ଗୋଟାଏ ନାହିଁ । ଏହା ସବୁ ଠକ ଭଣ୍ଡମାନଙ୍କର କଥା ।

ଜେମୀ ॥ ଲୋକେ କହନ୍ତି କରଣୀରେ ମହା ମହା କାମ ସବୁ ହୋଇଥାଏ ।

ବାବାଜି ॥ ଯଦି ହୋଇଥାଏ, ତେବେ ( କାଠ ଖଣ୍ଡେ ଉଠାଇ )
ଏ କାଠ ଖଣ୍ଡକତ ସୁନା ହୋଇ ପାରିବ ?

ଜେମୀ ॥ ( ରହି ରହି ) କିଏ କରିବ ?

ବାବାଜି ॥ ଯୋଗି ମାନେ କରଣୀ ଜାଣନ୍ତି—

ରାଧି ॥ ଆମକୁ ସେମିତି କିଛି ଜଣା ନାହିଁ ତ ।

ବାବାଜି ॥ ଆଚ୍ଛା, ଭରିଏ ସୁନାକୁ ଦଶ ଭରିକରି ଦେବା କଥା ?

ଜେମୀ ॥ ହଁ, ଶୁଣାଅଛି । ମଥୁରୀ ସାହୁ ଗୁଡ଼ିଆର ଘରଯାଏଁ
ଜଣେ ସାଧୁମହାରାଜା ବି ଗୁଣା କରିଦେବା ପାଇଁ କେଇ
ଭରି ସୁନା ନେଲେ—ତାଙ୍କ ଗଞ୍ଜେଇ ଖରଚ୍ଚ ନେଲେ—

ବାବାଜି ॥ ସେଠାରୁ ?

ଜେମୀ ॥ କଣ ହେଲା କେଜାଣି ?

ରାଧି ॥ ମୁଁ ଜାଣିଛ । ସେ ଗୁଡ଼ିଆଣିର ଝିଅ ପିଲାଦିନେ ମୋ'
ସାଙ୍ଗରେ ଖିଲପାନ ବସିଥିଲା । ସେଇ ଆସି ମତେ
କହିଲା—"ଜାଣିଚ ନା ଖିଲପାନ, ଉଦୁଉଦିଆ
ଦିପହର । କେହି କୁଆଡ଼େ ନାହାନ୍ତି, ଜଣେ ସାଧୁ
ମହାରାଜ ଆଉ ତାଙ୍କ ଚେଲା ଆମ ଘରକୁ ଆସିଲେ"—

—ସେଇ ଅତୀତ ଘଟଣାର ଦୃଶ୍ୟ—

[ ମଥୁରୀ ସାହୁଙ୍କ ବାହାର ଘର ।
ଖରାଦିନ । ଦ୍ୱିପ୍ରହର । ଜଣେ ସାଧୁ ଓ ଚେଲା
ଆସିଲେ । ସମସ୍ତ ଦେହରେ ଭସ୍ମ ପ୍ରଲେପ ।
ମୁହଁରେ ପ୍ରଚୁର ଦାଢ଼ି ଓ ମଥାରେ ଗଦାଏ
ଜଟା । ଝୁଲି, କମଣ୍ଡଳୁ ଓ ଚିମୁଟା ରହିଛି ।
ଦୁହେଁ, ବିଶେଷତଃ ବାବାଜି ଜଣକ ଯେମିତି
ଖୁବ୍ ଚତୁରତା ସହ ବିକୃତ ଗଳାରେ
କଥାବାର୍ତ୍ତା କରୁଥାନ୍ତି ]

ସାଧୁ ॥ ଅହୋ ! ଅହୋ ! କି ପ୍ରଚଣ୍ଡ···କି ପ୍ରଚଣ୍ଡ···

ଚେଲା ॥ ( ନିମ୍ନ ସ୍ୱରରେ ) ଖାଲି ଚଣ୍ଡ ଚଣ୍ଡ କଣ ହଉଚ ?

ସାଧୁ ॥ ( ନିମ୍ନ··· ) ମନେ ପଡ଼ୁନାହିଁ—ଉଁ···ହୁଁ···ହିଁ, ମନେ ପଡ଼ିଲା । ( ପୂର୍ବପରି ) ଅହୋ, କି ପ୍ରଚଣ୍ଡ ମାର୍ତ୍ତଣ୍ଡ ତେଜ ।···ବମ୍ ବମ୍ ଭୋଲା ।

ଚେଲା ॥ ବମ୍ ବମ୍ ଭୋଲା ।

ସାଧୁ ॥ ହର୍ ହର୍ ମହାଦେବ ।

ଚେଲା ॥ ହର୍ ହର୍ ମହାଦେବ ।

ସାଧୁ ॥ କି ପ୍ରଚଣ୍ଡ···

ଚେଲା ॥ ଦୁର୍ଦ୍ଦଣ୍ଡ ତେଜ ।

[ ସାଧୁ କଟମଟ କରି ଚେଲା ଆଡ଼େ ଗୃହିଁଲେ । ଚେଲା ଡ଼ରିଗଲା ]

ସାଧୁ ॥ ( ନିମ୍ନସ୍ୱର ) ଦୁର୍ଦ୍ଦଣ୍ଡ ନୁହେଁ—ମାର୍ତ୍ତଣ୍ଡ···

[ ଠିକ୍ ଏତିକି ବେଳେ ମଥୁରା ସାହୁ ସ୍ତ୍ରୀ ଆସିଲା । ମଧ୍ୟ ବୟସ୍କା । ସାଧୁଙ୍କୁ ଦେଖି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଭକ୍ତି ଭାବରେ ତରଳିଗଲା ]

ସ୍ତ୍ରୀ ॥ ଏଁ ! ସାଧୁବାବା ! ( ଗଳବସ୍ତ୍ର ହୋଇ ପ୍ରଣାମ କରି ଉଠିବସି) କି ଦୁର୍ଦ୍ଦଣ୍ଡ ଖରା । ଜନପ୍ରାଣୀ କେହି ନାହିଁ । ଛାତି କବାଟ ପଡ଼ିଯାଇଚି । କେମିତି ବଜେ ହେଲେ ଏ ଖରାରେ । ବସିଯା'ନ୍ତୁ···ବସିଯା'ନ୍ତୁ···

[ କାଖରେ ଜାକିଥିବା ମୃଗଛାଲ ଖଣ୍ଡିକ ବିଛେଇ ସାଧୁ ଓ ଚେଲା ବସିଲେ ]

ସାଧୁ ॥ ହଁ । କୁହତ ମା'—କେତେ ଭରିଯାଏ ସୁନା ଚୋରି ଯାଇଛି ?

[ ସ୍ତ୍ରୀ ଟି ଆଶ୍ଚର୍ଯ୍ୟରେ ଯେମିତି ହତବାକ୍ ହୋଇଗଲି ]

ସ୍ତ୍ରୀ ॥ ସୁ···ସୁନା !

ସାଧୁ ॥ ହୁଁ ।

ସ୍ତ୍ରୀ ॥ ଚୋରି···ଯାଇଛି !!

ସାଧୁ ॥ ହଁ ।

ସ୍ତ୍ରୀ ॥ ( ଭେ ଭେ ହୋଇ କାନ୍ଦି ଉଠି ) କେମିତି ଜାଣିଲ ବାବା—ପାଞ୍ଚ ଛ ଭରି ସୁନା ଚୋର ନେଇଗଲା । ( କାନ୍ଦୁଥାଏ )

ସାଧୁ ॥ କହିଯାଅ ମାତା—

ସ୍ତ୍ରୀ ॥ ଚୋରି କଥା ଲୋକେ ଜାଣିବେ—ଏ ଗୁଡ଼ିଆ ମହାଜନ ଘରେ ଆଉ ସୁନା ଅଛି ବୋଲି ପୁଣି ଚୋର ଲଗିବେ —ଏ ଡରରେ ଆମେ ଗେରସ୍ତ ଘରଣୀ ଦୁହେଁ ଘରେ କବାଟ କଳ କାନ୍ଦୁଥାଉ । କାହାକୁ କଛି କହିନୁ— କାନକୁ ଦ'କାନ ହେଇନ···ତେମେ କେମିତି ଜାଣିଲ ?

ସାଧୁ ॥ ଆମ୍ଭେ ତ ମା କାନରେ ଶୁଣୁନା—ମନରେ ଶୁଣୁ ।

ସ୍ତ୍ରୀ ॥ ଜାଣେ ପର । ବାବାଙ୍କୁ ଦେଖିଲା ମାତ୍ରକେ ଜାଣିଲି ବାବା ସର୍ବଜ୍ଞ ।

ସାଧୁ ॥ ବମ୍ ବମ୍ ଭୋଳା ।

ଚେଲା ॥ ହର ହର ମହାଦେବ ।

ସାଧୁ ॥ ପ୍ରଗଣେ ଡେରିବସ—ମୌଜେ କଇଳାସ ପୁର···

ସ୍ତ୍ରୀ ॥ ମୋ' ସାନ ଭଉଣୀ ଶାଶୁଘର ଗାଁ···ଏଠିକି ଦଶକୋଶ ବାଟ ।

ସାଧୁ ॥ ଆମ ପାର୍ବତୀ ମାତା···ଗୁଡ଼ଆ ଘର ବୋହୂ···

ସ୍ତ୍ରୀ ॥ ( ଖୁସିରେ ) ସେଇ ପରା ମୋ' ଭ'ଣୀ ।

[ ସାଧୁ ଚେଲାକୁ ଚାହିଁଲେ ]

ଚେଲା ॥ ପାର୍ବତୀ ମାତାଙ୍କ ଘରେ ବାବାଙ୍କ ଆସ୍ଥାନ ପଡ଼ିଲା ।

ସ୍ତ୍ରୀ ॥ ସତେ କି ?

ସାଧୁ ॥ ଟଙ୍କାଟିଏ ରଖି ମା' ପାର୍ବତୀ ମୋର ପଦ ସେବାରେ ଲାଗି ପଡ଼ିଲା—

ସ୍ତ୍ରୀ ॥ ଆହା !

ସାଧୁ ॥ ପଚାରିଲି—ଟଙ୍କାଟି କି ପାଇଁ ଦେଲୁ ମାତା ?

ଚେଲା ॥ କହିଲେ—ଦର୍ଶନୀ ।

ସାଧୁ ॥ ଆମେ ତ ଶିବଭକ୍ତ ସାଧୁ । ମା' ମୋର ସାକ୍ଷାତ୍ ଶିବ ପ୍ରିୟା ପାର୍ବତୀ । କହିଲି—ତୁମ୍ଭ ଦର୍ଶନୀତ ଆମ୍ଭେ ଗ୍ରହଣ କଲୁ । ଏବେ ଏ ଭକ୍ତର ଦର୍ଶନୀ ତୁମ୍ଭେ ଗ୍ରହଣ କର ମାତା ।···ଟଙ୍କାଟି ଉଠେଇ ନେଇ ବମ୍ ବମ୍ ଭୋଳା କହି ପାର୍ବତୀଙ୍କ ହାତରେ ଥୋଇ ଦେଲି ।

ସ୍ତ୍ରୀ ॥ କାହିଁକି ବାବା, ଟଙ୍କାଟିକୁ ଫେରାଇଁ ଦେଲ କାହିଁକି ?

ଚେଲା ॥ ଟଙ୍କାଟିଏ ନୁହେଁ ମ । ଦଶଟଙ୍କା । ସାଧୁବାବାଙ୍କ ହାତ ଲାଗି ଟଙ୍କାଟି ଦଶଟଙ୍କା ହେଇଗଲା ।

ସ୍ତ୍ରୀ ॥ କଣ କହୁଚ !!

( ସଙ୍ଗେ ସଙ୍ଗେ ସାଧୁଙ୍କ ପାଦ ଟାଣି ଆଣି ସ୍ତ୍ରୀଟି ସେବା କରିବାକୁ ଲାଗିଲା )

ସାଧୁ ॥ ମଙ୍ଗଳ ହେଉ ମାତା-ମଙ୍ଗଳ ହେଉ । ଏଇ ଗାଁ ବାଟେ ଯାଉଥିଲି, ମନ ଭିତର ଚହଲାଇ ଦେଇ କେହି ଆମକୁ କହିଦେଲା—ମଥୁରା ସାହୁ ଘରେ ଟିକିଏ ପାଦ ପକେଇ ଆସ ବାବା—ତା' ଉପରେ ବିପତ୍ତି ପଡ଼ିଛି ।···ଚାଲି ଆସିଲୁ ।···ଏବେ ଆମକୁ ମେଲାଣି ଦିଅ ମାତା ।

[ ସାଧୁଙ୍କ ପାଦ ସେବା କରୁ କରୁ ଗୁଡ଼ିଆଣୀ ସ୍ତ୍ରୀଙ୍କ ଆଖିରୁ ଲୁହ ବୋହି ଆସୁଥାଏ ]

ସ୍ତ୍ରୀ ॥ ମତେ ଏ ବିପତ୍ତିରୁ ଉଦ୍ଧାର କର ବାବା !

ସାଧୁ ॥ ବୁଝି ପାରିଲି ନାହିଁ ମା ।

ସ୍ତ୍ରୀ ॥ ପାଞ୍ଚଶହ ଟଙ୍କାଟିକୁ ତ ଦଶଟଙ୍କା କରି ଦେଲ ।

ସାଧୁ ॥ ଓଁ ଶିବ-ଶିବ-ଶିବ···[ ସ୍ତ୍ରୀଟି କ୍ଷିପ୍ରଗତିରେ ପାଦସେବା କରୁଥାଏ ]

ସ୍ତ୍ରୀ ॥ ମୋର ଯୋଡ଼ ପାଞ୍ଚ ଛ ଭରି ସୁନା ଗୋଟିଏ ଯାଇଛି···

ସାଧୁ ॥ ସେ ପାଠ ତ ଭୁଲି ଯାଇଛୁ ।

ସ୍ତ୍ରୀ ॥ ମୁଁ ସେକଥା କହୁ ନାହିଁ । ( ଟିକିଏ ନମ୍ର ସ୍ୱରରେ ) ମୁଁ ଆଉ ପାଞ୍ଚ ଛ ଭରି ସୁନାଆଣି ଦେଉଛି । ତମର ହାତ ଟିକିଏ ବଜେଇ ଦଶ ଗୁଣା କରିଦିଅ—ଦଶବାର ଭରି ହୋଇ ଯାଉ । ମୋ' ଗୋଟିଏ ସୁନା ଭରଣା ହେଇଯିବ । ଆଉ ବେଶୀରେ ମୋର ଲୋଭ ନାହିଁ ।

ସାଧୁ ॥ ଏ ଅତି ଅଡ଼ୁଆରେ ତୁମେ ଏ ସାଧୁଟାକୁ ପକେଇଲ ମା । କିନ୍ତୁ ସାଧକ ବିଦ୍ୟା ଏ ନୁହେଁ । ଏ କାର୍ଯ୍ୟ ପୁଣି ଅନ୍ୟ କେହି ଦେଖିବେ ନାହିଁ—ଜାଣିବେ ନାହିଁ—ଶୁଣିବେ ନାହିଁ ।

ସ୍ତ୍ରୀ ॥ ଏ ଉଦ୍‌ଭଦଆ ବଡ଼ପଦରେ ଆଉ କେତ୍ୱ ନାହାନ୍ତ ମହାରାଜ ।···( ପାଦଧରି ) ହୁକୁମ୍ ହେଲେ ସୁନା ଆଣିବ ।

[ ସାଧୁ ପଦ୍ମାସନରେ ବସି ଆଖି ବୁଜି ବସିଲେ ଓ ସେମିତି ଆଖି ବୁଜି ହୁକୁମ ଦେଲେ— ]

ସାଧୁ ॥ ହୁକୁମ ହେଲା—ଯାଅ ମା—ପଣତରେ ଲୁଚେଇ—ବାଁ ହାତରେ ପଣତଧରି ସୁନା ନେଇ ଆସ ।

ସ୍ତ୍ରୀ ॥ ଯାଉଛି ।

[ ସ୍ତ୍ରୀ ଲୋକଟି ଚାଲିଗଲା । ସାଧୁ ଆଖି ଖୋଲିଲେ । ଚେଲା ଜଣ କହିବାକୁ ଯାଉଥିଲେ, ସାଧୁ ନାସ୍ତିସୂଚକ ଇଙ୍ଗିତ ଦେଲେ । ସବୁ ଚୁପ୍‌ଚାପ୍ ।···କିଛି ସମୟ ପରେ ସ୍ତ୍ରୀ ଲୋକଟି ବାଁ ହାତ ପଣତ କାନକୁ ଜାକି ଧରି ଆସିଲା । ତା'ର ଅସ୍ଥିରତା ଓ ଉଦ୍‌ଗ୍ରୀବ୍‌ତା ବଢ଼ି ଯାଇଛି । ସେ ଆସି ସାଧୁଙ୍କର ଠିକ୍ ସାମ୍‌ନାରେ ବସିଲା । ସେ ପ୍ରାୟ ଥରୁଥାଏ ]

ସ୍ତ୍ରୀ ॥ ( କାନରୁ ଅଳଙ୍କାର ଚକ ବାହାରିକରି ) ନିଅ ସାଧୁ ବାବା—

ସାଧୁ ॥ ( ସେମିତି ଆତଙ୍କରେ ) ନା-ନା-ନା-ନା-ମାତା । ଆମ୍ଭେ ଏସବୁ ସ୍ପର୍ଶ କରିବୁ ନାହିଁ···କ କ ଅଳଙ୍କାର ଆଣିଛ ?

ସ୍ତ୍ରୀ ॥ ଦୁଇପଟ ଅନନ୍ତ—ଗୋଟିଏ ଯୋଡ଼ିପିଆ ମାଳ । ପାଞ୍ଚ ଭରିରୁ ବେଶି ହେବ ।

ସାଧୁ ॥ ଯଜ୍ଞ ଚରମ ଭାଗ୍ୟରେ ଥାଏ—ଏ ଗହଣାର ଦଶଗୁଣା ସୁନା ତେମେ ପାଇବ । ମାତ୍ର ଏ ଗହଣା ନୁହେଁ ।

ସ୍ତ୍ରୀ ॥ ଆଣ ଦେବେ କ ଗହଣା ବାବା ?

ସାଧୁ ॥ ସେକଥା ମୋର ବାବା ଶିବ ଶମ୍ଭୁ ଜାଣନ୍ତି ।

[ ସାଧୁ ଝୁଲିଟିକୁ ଉଠେଇ ନେଇ ମୁହଁ ଖୋଲି ଧରିଲେ ]

ସ୍ତ୍ରୀ ॥ ଏଇ ଝୁଲିରେ ପକେଇବ ?

ସାଧୁ ॥ ପକେଇବା ଆଗରୁ ଝୁଲିରେ ଖାଲିହାତ ପୂରେଇ ଦେଖ, ଝୁଲିରେ ଆଉ କଣ ଅଛି ?

[ ସ୍ତ୍ରୀ ଲୋକଟି ସାଧୁଙ୍କ ପାଦ ସ୍ପର୍ଶକରି ଝୁଲିରେ ହାତ ପୂରାଇବା ବେଳକୁ ସାଧୁ ବାଧା ଦେଲେ ]

ସାଧୁ ॥ ଶୁଣିଥାଅ ମାତା—ଏଠି ଏ ଝୁଲି **ରହସ୍ୟ**—ଝୁଲି ଭିତରେ ତମ ସୁନା ରହସ୍ୟ—ଆଉ ସୁନାକୁ ଜଗି- ରହିବ ଶିବଙ୍କ ସର୍ପ—ନାଗସାପ । ହାତ ପୂରାଅ ।

ସ୍ତ୍ରୀ ॥ ( ଝୁଲି ମୁହଁ ପାଖରେ ହାତ ରଖି-ଡରିଡରି ) ବାବା···

ସାଧୁ ॥ ସାଧୁ ଉପରେ ବିଶ୍ୱାସ ରଖ—ମନ ନିର୍ମଳ ରଖ—କିଛି ଡରନାହିଁ ।···ହୁଁ, ହାତ ପୂରାଅ ।

[ ସ୍ତ୍ରୀ ଲୋକଟି ଖୁବ୍ ସତର୍କତା ସହ ହାତ ପୂରାଇ ସଙ୍ଗେ ସଙ୍ଗେ ହାତ କାଢ଼ି ଆଣିଲା ]

ସ୍ତ୍ରୀ ॥ ( ଖୁସି ମନରେ ) କିଛି ନାହିଁ ।

ସାଧୁ ॥ ବମ୍ ବମ୍-ଭୋଲା । ଝୁଲି ଭିତରକୁ ଗହଣା ଛାଡ଼ିଦିଅ ।

[ ସ୍ତ୍ରୀଟି ଝୁଲି ଭିତରକୁ ଗହଣା ପକେଇ ଦେଲା । ସାଧୁ ଝୁଲିଟି ତାଙ୍କ ସାମନାରେ ରଖିଲେ ]

ସାଧୁ ॥ ଯାହା ମୁଁ କହୁଛି । ଏବେ ଝୁଲା ରହିଲା—ଖଦଣା ରହିଲା—ସାପ ରହିଲା ।

ସ୍ତ୍ରୀ ॥ (ଡରିଡରି) ସାପ କେତେବେଳେ ବାହାରିବ ବାବା ?

ସାଧୁ ॥ ସେ କଥା ମୁଁ ଜାଣେ ମା । ତୁମେ ଟେକା ପକାଇ ଠିକ୍ ମୋ' ଆଗରେ ବସ ।

ସ୍ତ୍ରୀ ॥ ( ବସିଲା )

ସାଧୁ ॥ ହାତ ଯୋଡ଼ ।

ସ୍ତ୍ରୀ ॥ ( ଯୋଡ଼ିଲା )

ସାଧୁ ॥ ମୋ' ଆଖି ସାଙ୍ଗରେ ଠିକ୍ ଆଖି ମିଳେଇ ରଖ ।

ସ୍ତ୍ରୀ ॥ ( ଆଖି ମିଳାଇଲା )

—ଗୀତ—

ସାଧୁ ॥ ଆଖିରେ ଆଖି ମିଳିଥାଉ
ସୁନାକୁ ସାପ ଜଗିଥାଉ

ସ୍ତ୍ରୀ ॥ ସାଧୁ ସନ୍ଥଙ୍କ ମନ ଜଗି
ଭଗତ ଫଳ ପ୍ରାପ୍ତହଉ ॥

ସାଧୁ ॥ ଦେଖତ ଗୋବିନ୍ଦଙ୍କ ଗତି
ଝୁଲା ତ ତଳେ ବସିଚନ୍ତି

( ଟିକିଏ ପରେ )

ତକ୍ଟୁ ଉଠାଇ ହାତେ ଧରି
ସାଧୁ କ ରଙ୍ଗ ହସୁଚନ୍ତି ॥

[ ହସ ହସ ମୁହଁରେ ସାଧୁ ଦୁଇ ହାତରେ ଝୁଲାର ମୁହଁକୁ ଖୋଲି ଟେକି ଧରିଲେ ]

ସାଧୁ ॥ ନଅ ମା—ଯୋଉ ହାତରେ ସୁନା ପକେଇ ଥିଲୁ ସେଇ ହାତରେ କାଢ଼ି ନଅ ।

[ ଗୁଡ଼ିଆଣୀ ସ୍ତ୍ରୀ ଏକାବେଳକେ ବଜ୍ରାହତା ହୋଇପଡ଼ିଛି ]

ସ୍ତ୍ରୀ ॥ ମତେ···ମତେ ଡର ମାଡ଼ୁଛି ବାବା—ତେମେ ମୋ କାନରେ ସୁନାତକ ଅଜାଡ଼ି ଦିଅ ।

ସାଧୁ ॥ (ହୋ ହୋ ହୋଇ ହସି) ଆଚ୍ଛା-ଆଚ୍ଛା—

[ ସ୍ତ୍ରୀଟିର ପଣତ କାନରେ ସାଧୁ ଝୁଲିରୁ ଗହଣା ଅଜାଡ଼ି ଦେଲେ । ବହୁତ ପ୍ରକାରର ଗହଣା । ସଂଖ୍ୟାରେ ପୂର୍ବ ଗହଣାଠୁଁ ବହୁତ ବେଶୀ । ସ୍ତ୍ରୀ ଲୋକଟି କଣ କରିବ କିଛି ବୁଝିପାରୁ ନଥାଏ ]

ସ୍ତ୍ରୀ ॥ ବାବା···ବାବା···

ସାଧୁ ॥ ଦ'ଗୁଣ ହେଇଛି ତ ମା ?

ସ୍ତ୍ରୀ ॥ ହଁ ବାବା, ବେଶୀ ହବ ପଛେ ଊଣା ପଡ଼ିବ ନାଇଁ ।

ସାଧୁ ॥ ଓଃ ଶିବ—ଶିବ ! ଏକ ମୁହାଁ ହୋଇ ଚାଲିଯାଅ ମା ! ଗହଣା ସିନ୍ଦୁକରେ ରଖିଦିଅ ।···ଆମେ ବିଦାୟ ନେଉଚୁ ।

[ ସ୍ତ୍ରୀ ଲୋକଟି ଦୁଇ ଚାରିପାଦ ଯାଇ ପୁଣି ଫେରି ଆସିଲା ]

ସ୍ତ୍ରୀ ॥ ନାଇଁ ମହାରାଜ, ଯିବେ ନାଇଁ—ଯିବେ ନାଇଁ—ଥିବେ । ମୁଁ ଆସୁଚି ।

[ ସ୍ତ୍ରୀ ଲୋକଟି ଚାଲିଯିବା ପରେ ସାଧୁ ଓ ଚେଲା ଦୁହିଁଙ୍କ ମୁହଁରେ ମାରିବ କିନ୍ତୁ ପରିତୃପ୍ତ ହସ ଫୁଟିଉଠିଲା । ସାଧୁ ଝୁଲିଟି

ଉଠାଇ ଆଣିଲେ । ପ୍ରକୃତରେ ଝୁଲିଟିରେ ଦୁଇଟି ମୁଣି ରହିଛି । ଗୋଟିଏ ମୁଣିରୁ ସ୍ତ୍ରୀ ଲୋକଟି ଦେଇଥିବା ସୁନା ଗହଣାତକ ବାହାର କରି ହାତରେ ଧରିଲେ । ସାଧୁ ଓ ଚେଲା ଯଥାସମ୍ଭବ ନମ୍ର ସ୍ୱରରେ କଥାବାର୍ତ୍ତା ହେଲେ ]

ସାଧୁ ॥ ପାଞ୍ଚ ଛ' ଭରି ଜସ୍ତପୁଷ୍ପ ପକ୍କା ସୁନା । ସୁନା ଭରି ଏବେ ବାର ଟଙ୍କା ।

ଚେଲା ॥ ଆଜି ସିଏ ଯୋଉ ଗହଣା ନେଲେ···

ସାଧୁ ॥ ଦଶ ବାର ଭରି ଗିଲ୍‌ଟି···ଗିଲ୍‌ଟି···ଯାହା ଭରି ବାର ପଇସା ହବ ନାହିଁ ।

ଚେଲା ॥ ଏମିତିକା ଘରୁଆ ଘର ଘରଣୀ—ଏ ଝୁଲି କାରବାର କିଛୁ ବୁଝିପାରିଲେ ନାହିଁ ।

ସାଧୁ ॥ (ଝୁଲିର ଦୁଇଟି ମୁଣିକୁ ଦେଖାଇ) ବାଟ ରଖିଛି ଯେ ଜାଣିବେ । ପୁଣି ସାପକୁ ଡର !

ଚେଲା ॥ ଯାହା କହୁଛ ମାମୁଁ ।···ସତରେ ମାମୁଁ, ତେମେ ଯେମିତିକା ସାଧୁ ହେଇ ରଙ୍ଗ ଦେଖେଇଲ···

ସାଧୁ ॥ ମିଛରେ କଣ ଯାହା ଦଳରେ ରହି ସୁଆଙ୍ଗ କରୁଛ ? ଏ ନଣ ଦାଢ଼ୀ ଆଲ୍‌ଖାଲ୍ଲା ସବୁତ ଆମ ଆଖଡ଼ାର ।

[ କହୁ କହୁ ନଣ ଦାଢ଼ି ଖସି ପଡ଼ୁଥିଲା—ସାଧୁ ପୁଣି ତାକୁ ସଜାଡ଼ି ନେଲେ ।··· ସ୍ତ୍ରୀ ଲୋକଟି ପୁଣି ଆସିଲା । ମୁହଁରେ ହସ, ଆଖିରେ ଲୁହ ]

ସ୍ତ୍ରୀ ॥ ବାବା !

ସାଧୁ ॥ କାନ୍ଦୁଚ କାହିଁକି ମା ?

ସ୍ତ୍ରୀ ॥ ନାଇଁ ବାବା ମୁଁ କାନ୍ଦୁ ନାହିଁ । ମୋ ସୁନା ମୁଁ ପାଇଗଲି—ମୋ ମନ କାହିଁରେ କଣ ଖୁସି ।

ସାଧୁ ॥ ହଉ ମା, ଆମ୍ଭକୁ ବିଦାୟ ଦିଅ ।

[ ଦୁଇଟି ଟଙ୍କା ରଖି ସ୍ତ୍ରୀ ଲୋକଟି ପ୍ରଣାମ କଲା ]

ସାଧୁ ॥ ଇଏ କଣ ମା ?

ସ୍ତ୍ରୀ ॥ ଆମ ପାଇଁ ତମ କରଣୀ ଖଟେଇଲ—ତମ ଗଞ୍ଜେଇ ସେବା ଖରଚ୍ଚ ।

ସାଧୁ ॥ ହଉ ମା, ତମର ମଙ୍ଗଳ ହଉ, ଆସ ବାବା ।

[ ଦୁହିଁଙ୍କର ପ୍ରସ୍ଥାନ ]

[ଅତୀତ ଘଟଣାର ଦୃଶ୍ୟ ସମାପ୍ତ ହେଲା । ଆମେ ପୁଣି ପୂର୍ବ ଦୃଶ୍ୟକୁ ଫେରିଲୁ ]

ଜେମୀ ॥ ହଇଲେ ବୁଧି, ଏକଥା ତ ତୁ ମତେ କେବେ କହିନୁ ।

ବୁଧି ॥ ମୋ ଖିଲପାନ ପଣ୍ଡା ମତେ ମନା କରିଥିଲା—କହିଥିଲା, କାହାକୁ କହିବୁ ନାଇଁଟି—କହିଲେ ଏକା ତୋ' ଜଭ ନେଉଟି ପଡ଼ିବ ।

ବାବାଜି ॥ ଆଉ ତୁମେ କହିଲ କେମିତି ?

ବୁଧି ॥ କହିତ ଦେଲି ।

ଜେମୀ ॥ କାଇଁ, ତୋ ଜଭତ ନେଉଟି ପଡ଼ିଲା ନାହିଁ ?

ବାବାଜି ॥ ଯୋଉଁଠି ସବୁ ମିଛ, ସବୁ ଭଣ୍ଡାମି-ସବୁ ଠକ ପଣ-ସେଠି ଜଭର କ' ଦୋଷ ଯେ ନେଉଟି ପଡ଼ିବ ।······ଆନନ୍ଦ ପଣ୍ଡା ଘଟଣାରୁ ଆମ୍ଭର କରଣୀ କଥା ଯେମିତି ରଟିଛି, ତାହା ଯଦି କେହି ଶଠ ସାଧୁ କପାଳକୁ ଘଟିଥାନ୍ତା, ତେବେ ସେ ମଥୁରା ସାହୁ ଘଟଣା ପରି ଅନେକ ଧନ ଉପାର୍ଜନ କରିଥାନ୍ତା । ଏଇଥିରୁ ସବୁ ଜାଣିବ ।

ଜେମୀ ॥ ହେଲା ଯେ, ସାଧୁମାନଙ୍କ କଥାରେ ଆଉ ଆଉ କେତେ
କଥା ସତ ହୁଏ ।

ରାଧି ॥ ହଁ ମହାରାଜ, ଏମିତି କେତେ କେତେ କଥା ଶୁଣା
ହୋଇଛି ।

ବାବାଜି ॥ (ହସି) ତମମାନଙ୍କୁ ଆଉ ପାର ହେବ ନାହିଁ । ଆଉ
ପୁଣି କି କଥା ?

ଜେମୀ ॥ କାନଗୋଇ ଘର ବୋହୂର ପୁଅ କେମିତି ହେଲା ?

ବାବାଜି ॥ କେମିତି ? (ବାବାଜି ହସୁଥାନ୍ତି)

ଜେମୀ ॥ —ଗୀତ—

କାନଗୋଇ ଘର ବୋହୂ
ବାର ବର୍ଷ ବିତିଗଲା
ପୂଜିଲା କେତେ ଯେ ଦିଅଁ
ପିଲା ମୁହଁ ନ ଦେଖିଲା । ୧ ।

ବାବାଜି ॥ ସେଇଠୁ ?

ରାଧି ॥ —ଗୀତ—

କାହୁଁ ଆସି ସାଧୁ ବାବା
ହେଲେ ସେ ବୋହୂର ସାହା
ବରଷକ ଧରେ ଦେଖ
ହେଲା ସେ ପୁଅର ମାଆ । ୨ ।

ଜେମୀ ॥ ଥରେ କାଠପାଣିରେ ତ ତା'ର ଅପୁତ୍ରିକ ଦୋଷ
କଟିଗଲା ।

ରାଧି ॥ ଆଉ ଆମ ମଲ୍ଲୀପୁର ଜମିଦାରଙ୍କ ମକଦ୍ଦମା କଥା ।

ବାବାଜି ॥ କଣ ଶୁଣାଯାଉ—

ଜେମୀ ॥ —ଗୀତ—

ମଲ୍ଲୀପୁର ଜମିଦାର
କଲେ କେତେ ମକଦ୍ଦମା
ସବୁ ହେଲା ଡିସିମିସି
ବୁଡ଼ିଗଲା ଜମି ଜମା । ୩ ।

ରାଧି ॥ କାଶୀରୁ ଆସିଲେ ବାବା
ବିଭୂତି ଦେଲେ ଉଡ଼ାଇ
ହାକିମଙ୍କ ସିରସ୍ତାରେ
ବିଭୂତି ପଡ଼ିଲା ଯାଇ । ୪ ।

ବାବାଜି ॥ ଆଚ୍ଛା ! ବିଭୂତି ଉଡ଼ି ଉଡ଼ି ଯାଇ ଇଜଲାସରେ ପଡ଼ିଲା ।

ଜେମୀ ॥ ହଁ ପରା ! ଲୋକେ ଦେଖିଛନ୍ତି ବୋଲି କୁହାକୁହି ହଉଥିଲେ ।

ବାବାଜି ॥ କେବଳ ହାକିମ ଯାହା ଦେଖି ପାରିଲେ ନାହିଁ !

ରାଧି ॥ ହାକିମ ନ ଦେଖିଲେ କଣ ହେଲା ?

ଦୁହେଁ ॥ —ଗୀତ—

ହାକିମ ହୋଇଲେ ବଶ
ମାରିଲେ କଲମ ଗାର
ମକଦ୍ଦମା ହେଲା ଡିଗ୍ରୀ
ନାଚିଗଲେ ଜମିଦାର । ୫ ।

ବାବାଜି ॥ ହୁଁ । ତା'ହେଲେ ଜମିଦାର ନାଚିଲେ ?

ଜେମୀ ॥ କାହିଁ କହୁଚନ୍ତି ମହାରାଜ !! ବାଜା—ବାଜଣା- ମଶାଲ ଦହୁଡ଼ି । ···କାଶୀ ବାବାଙ୍କୁ କୁଣ୍ଢେଇ ଧରି ବହେ ନାଚିଲେ—ପୁଣି ବି ହାତରେ ବ'ଟା ବୋତଲ ଧରି ବହେ ନାଚିଲେ—

ବାବାଜି ॥ ଶୁଣ । କାନଗୋଇ ବୋହୂଙ୍କ ପୁଅ ଲାଭ ଠୁଁ ଜମିଦାରଙ୍କ ମକଦ୍ଦମା ଡିଗ୍ରୀଯାଏ ସବୁ ହେଲା କାକ ତାଳକ ନ୍ୟାୟ—ଅର୍ଥାତ୍ "କୁଆ ଉଡ଼ିବାକୁ, ତାଳ ପଡ଼ିବାକୁ ।" କସ୍ତୁ କାରଣରୁ କୌଣସି ସ୍ତ୍ରୀର କସ୍ତୁ କାଳ ଯାଏ ସନ୍ତାନ ସନ୍ତତି ହେଲେ ନାହିଁ । ସେ 'ସ୍ତ୍ରୀଟି କେତେ ଓଷା ବ୍ରତ କାଟୁପାଣି କରିଥିବ । ଫଳ କସ୍ତୁ ନାହିଁ । ମାତ୍ର ଦୈବଯୋଗେ ଜଣେ ସାଧୁଙ୍କ କାଟୁପାଣି ବେଳକୁ ସ୍ତ୍ରୀଟି ସନ୍ତାନବତୀ ହେଲା । ସାଧୁଙ୍କ ମହିମା ରଟିଗଲା । ମାତ୍ର ସେଇ ସାଧୁଙ୍କ କାଟୁପାଣି ଯେ ସବୁଠି କାଟୁ କରୁଛି—ଏକଥା ତୁମେ କହିପାରିବ ?

ଜେମୀ ॥ ( ଥତ ମତ ହୋଇ ) ···ନାହିଁ ମହାରାଜ । ଯୋଉଠି କାଟୁ ନକଲା, ସେଠି ସାଧୁ କହନ୍ତି—ଆମ ଉପରେ ଏ ଲୋକଟାର ତ ବିଶ୍ୱାସ ରହିଲା ନାହିଁ, କାଟୁ କରିଥାନ୍ତା କେମିତି ?

ବାବାଜି ॥ ସେଇ କଥା । ଯଦି ବିଶ୍ୱାସ ମୂଳ ହେଲା, ତେବେ ସାଧୁ ଆଜ୍ଞା, କାଟପାଣି—ଏହାର ମହିମା ରହିଲା କୋଉଁଠି ? ···ତୁମ୍ଭେ ତ ଆମ୍ଭକୁ ଗୋଟିଏ ମକଦ୍ଦମା କଥା କହିଲ—ଏବେ ଆମ୍ଭେ ତୁମକୁ ଗୋଟିଏ ମକଦ୍ଦମା କାହାଣୀ ଶୁଣଉଛୁ । —ଶୁଣିବ ?

ସାଧୁ ॥ କୁହନ୍ତୁ । ଆପଣ ଆମକୁ କେତେ ଭଲ ଭଲ କଥା କହୁଚନ୍ତି···କୁହନ୍ତୁ ।

ବାବାଜି ॥ ହଉ, ଶୁଣ ।

=ଏକ ଅତୀତ ଘଟଣାର ଦୃଶ୍ୟ=

[ କଟେଶ୍ୱ ଅଞ୍ଚଳ । ସାଧୁ ସୁଲଭ ସାଜସଜ୍ଜା ଓ ଅନ୍ୟାନ୍ୟ ଉପକରଣ ସହ ଜଣେ ସାଧୁ ବାବା ବସିଚନ୍ତି । ଅନ୍ୟ ଲୋକମାନଙ୍କର ଯିବା ଆସିବା ଚାଲିଛି । ଗ୍ରାମ୍ୟ ଅଞ୍ଚଳର ଜଣେ

ମାମଲତକାର ଢଙ୍ଗର ମଧ୍ୟବୟସ୍କ ଲୋକ ଆସିଲ । ମଥାରେ କେଶ ଭଙ୍ଗ ହେଇଛ— ନାକ ତଳେ ମାମଲତ୍ତ କାଟଆ ନଣ । ଦେହରେ ଫତେଇ, ଗୁଦର—ହାତରେ ବଙ୍କୁଲ ବାଡ଼ । ତା'ର ନାମ ହଉଛ କରୁଣି । ସେ ଆସି ସାଧୁଙ୍କୁ ସାଷ୍ଟାଙ୍ଗ ଦଣ୍ଡିପାତ କଲ ]

ବାବା ॥ ଜୟସ୍ତୁ ଭବତୁ ।······ଉଠ୍ ବାବା ।

କରୁଣି ॥ ଉଠିବ ନାହିଁ ।···ମତେ ଆଜ୍ଞା ମିଳବ ବୋଲ ଶ୍ରୀମୁଖରୁ ନଶୁଣିଲେ ଉଠିବ ନାହିଁ ।

ବାବା ॥ (ଚକ୍କାର କର) ଓଁ—ହ୍ରୀଂ—କ୍ଲୀଂ—ଶ୍ରୀଂ ( କରୁଣି ଚମକ ଉଠିଲ ) ···ଆଜ୍ଞା ମିଳବ ଉଠ୍ ।

[ କରୁଣି ଉଠି ହାତ ଯୋଡ଼ ବସିଲ ]

କରୁଣି ॥ ମକଦ୍ଦମା କାମରେ ଆସିଛ ।

ବାବା ॥ ଏଇଟା କରେଣ୍ଟ । ଏଠିକ ମକଦ୍ଦମା କାମରେ ନ ଆସି କଣ ଶଶୁର ଘର ଜ୍ୱାଇଁ ଡାକରାରେ ଆସିବୁ !! ଆମ୍ଭକୁ ପରିହାସ କରୁଚୁ ?

କରୁଣି ॥ ନାଇଁ ନାଇଁ ବାବା···

ବାବା ॥ ଶୁଣ୍ । ଆମ୍ଭଠାରେ ଯେବେ ବିଶ୍ୱାସ ଅଛୁ, ତେବେ ତୋ' ବିଶ୍ୱାସ ମୁଣି ଫିଟେଇ ଦେ' । ନାହିଁ ତ ଯା' ଏଠୁ—ଭାଗ୍—ନକଲ୍ ।

କରୁଣି ॥ ନାଇଁ ବାବା—ମତେ ଭଗେଇ ଦିଅ ନାଇଁ—ଏମିତି ମୋର ଷୋଳଣା ବିଶ୍ୱାସ ( ପାଦ ଛୁଇଁଲ )

ବାବା ॥ ହୁଁ କ ମକଦ୍ଦମା ? ଦିବାନି ନା ଫୌଜଦାରୀ ?

କରୁଣି ॥ ଦିବାନି ।

ବାବା ॥ ଆମେ ଜାଣିଥିଲୁ···ତୁ ବାଦୀ ନା ପ୍ରତିବାଦୀ ।

କରୁଣି ॥ ବାଘ ।

ବାବା ॥ ତା' ମଧ୍ୟ ଜାଣିଥିଲୁ ।

କରୁଣି ॥ ମୁଁ ଜାଣିଥିଲି ବାବା—ତୁମ୍ଭେ ସବୁଜାଣ—ସର୍ବଜ୍ଞ ।

ବାବା ॥ ପ୍ରଣବାଣୀ କଏ ?

କରୁଣି ॥ (ରାଗରେ ଜଳଉଠି) ସେ ଘୁଷୁରିଟାର କଥା ମତେ ପଚାର ନାହିଁ । ସେଇଟା ମୋର ଜାତଶତ୍ରୁ । ତା' ନାଁ ମୁଁ ତୁଣ୍ଡରେ ଧରିବି ନାହିଁ ।

ବାବା । (ହସ ହସ ମୁହଁ) ନାଁର ପ୍ରୟୋଜନ ନାହିଁ । ଯଦ୍ୟପି ମକଦ୍ଦମାରେ ଡିଗ୍ରୀ ନେବାର ଇଚ୍ଛାଥାଏ, ତେବେ ଏକ ଟଙ୍କା, ଏକ ଅଣା, ଏକ ପଇସା ବାହାର କର ।

କରୁଣି ॥ କାହୁଁ ପାଇବି ମହାରାଜ । ଚାଉଳ ଟଙ୍କାକୁ କଟକା ପଚିଶ ସେର । କେତେ ଚାଉଳ ବିକ୍ରି କରିବି ଯେ ଟଙ୍କାଟିଏ ଦେବି ।

ବାବା ॥ ତେବେ ଅଧୁଲିଟିଏ—

କରୁଣି ॥ ମରିଯିବି ସାଧୁ ବାବା ।

ବାବା ॥ ସୁ' କି ଟିଏ—

କରୁଣି ॥ ଦରମଲା ହୋଇଯିବି ।

ବାବା ॥ (ରାଗି) ତେବେ ଶୁଣ୍ । ଦୁଇ ଅଣା—ଦୁଇ ପଇସା ବାହାର କର । ନାଇଁତ ଯା ଏଠୁ—ଭାଗ୍ ନିକଲ୍—

କରୁଣି ॥ କଲି ବାବା, ବାହାର କଲି । (ପଇସା ରଖି) ଦୁଇ ଅଣାରେ ବାବାଙ୍କର ଚାରିସେର ନିଛଟା ଦୁଧ ଆଉ ଦୁଇ ପଇସାର ଗଞ୍ଜା—ଗୋଟିଏ ଦିନର ସେବା । ସେନା ହଉ ।

ବାବା ॥ ହେଲା ହେଲା । ଆମ୍ଭେ ଖୁବ୍ ଖୁସି । କହ ଆମକୁ ତୁ ବାଉଁଆ ନା ଡ଼ାଉଁଆ ?

କରୁଣି ॥ ଡାଉଁଆ ବାବା ।

ବାବା ॥ ବାଁ ହାତ ଦେଖା । ( ବାଁ ହାତ ବାହୁରେ ଗୋଟିଏ ତେଉଁରିଆ ବାନ୍ଧି ଦେଲେ) ଓଁ—ହ୍ରୀଂ-କ୍ଲୀଂ-ଶ୍ରୀଂ··· ଯା—ମକଦ୍ଦମା ଫଇସଲ ହେବା ଯାଏ ବାଁ ହାତରେ ଭୋଜନ କରିବୁ ।

କରୁଣି ॥ ପାରିବ ନାହିଁ ବାବା—

ବାବା ॥ ନ ପାରିବୁତ ମକଦ୍ଦମା ହାରିବୁ ।

[ କରୁଣି ନିଜ ବାଁହାତ ଦୁଇ ଗୃରି ଥର ମୁହଁ ପାଖକୁ ନେଇ ମୁହଁ ବିକୃତ କରି କହିଲା— ]

କରୁଣି ॥ ଭୋଜନ ବେଳେ ବାଁ ହାତ ମୋଟେ ମୁହଁ ଯାଏଁ ଯିବ ନାହିଁ ଗୋସେଇଁ ।

ବାବା ॥ ତେବେ ଉପବାସରେ ରହିବୁ ।

କରୁଣି ॥ ମକଦ୍ଦମା ମାସେ କି ଦେଢ଼ମାସ ଗୃଲିବ···

ବାବା ॥ ଆମ୍ଭ ଉପରେ ବିଶ୍ବାସ ରଖ୍ ।

କରୁଣି ॥ ବିଶ୍ବାସରେ ମକଦ୍ଦମା ଣଷ୍ଟେ-ନଷ୍ଟେ ଜିତିବି । ମାତ୍ର ବିଶ୍ବାସରେ ଦେଢ଼ମାସ ବଞ୍ଚିବି କେମିତି ?···(ହଠାତ୍) ଆଚ୍ଛା ମହାରାଜ, ମୋ ସ୍ତ୍ରୀ ଯଦି ମତେ ଖୁଆଇ ଦିଏ ?

ବାବା ॥ ଉତ୍ତମ କଥା । ମାତ୍ର ସେ ମଧ୍ୟ ସେଇ ବାଁ ହାତରେ ଖୁଆଇ ଦେବ ।

କରୁଣା ॥ (ଅତି ବିକଳରେ) ଆଉ ଅନ୍ୟ ଗତି କିଛି ନାହିଁ··· କିଛି ନାହିଁ ?

ବାବା ॥ ବାଁ ହାତ ଖଟେଇବୁ ତ ମକଦ୍ଦମା ଜିତିବୁ । ଉଠ୍ ଯା— ଏକ ମୁହାଁହୋଇ ବାହାରି ଯା ।

[ କନ୍ଧୁଣି ବଢାଯାଏ ନେଲା।...ଏ ଭିତରେ ପ୍ରାୟ ଏକ ମାସ ବିତି ଯାଇଛି। ପୂର୍ବର ସେଇ ସ୍ଥାନ-ସେଇ ସାଧୁବାବା। ଜଣେ ଗ୍ରାମବାସୀ ଆସିଲା। ପ୍ରାୟ ମଧ୍ୟବୟସ୍କ। ବେଶଭୂଷା ସାଧାରଣ। ନାଁ ତା'ର ମାଗୁଣି। ମାଗୁଣି ଚାଲିଯାଉଥିଲା, ସାଧୁଙ୍କୁ ଦେଖି ଫେରିଆସି ତାଙ୍କ ସାମ୍ନାରେ ଠିଆହେଲା। ]

ବାବା ॥ କଣ ଦେଖୁଚୁ ?

ମାଗୁଣି ॥ ( ବସିପଡ଼ି ) ନାଇଁ, ମନ ଭଲନାହିଁ।

ବାବା ॥ କାହାମନ ? ତୋ'ମନ ?

ମାଗୁଣି ॥ ( ନିଜ ଦୁଇପାପୁଲିରେ ସାଧୁଙ୍କ ହାତଧରି ) ଆପଣତ ବାବା ସର୍ବଜାଣ—ମୋ' ମନକଥା କଣ ବୁଝିପାରୁ ନାହାନ୍ତି ଯେ...

ବାବା ॥ ମୂର୍ଖ ! ତୁ ଯଦି ଜାଣୁ ଆମ୍ଭେ ସର୍ବଜ୍ଞ—ଆମ୍ଭେ ତୋ ମନ ଦୁଃଖ ହରଣ କରି ପାରିବୁ—ତୁ ସୁନା ପିଲାଟି ପରି ଆସି ଏଠି ବସି ପଡ଼ିଲୁ କାଇଁକି ?...ପଛକୁ ଘୁଞ୍ଚ୍।

[ ମାଗୁଣି ଘୁଞ୍ଚିଲା ]

ସାଷ୍ଟାଙ୍ଗ ପ୍ରଣିପାତ ହ।

[ ମାଗୁଣି ପ୍ରଣିପାତ କଲା ]

ଉଠି ବସ୍।

[ ମାଗୁଣି ବସିଲା ]

ମାଗୁଣି ॥ ଆମ ଭକିଲ ବାବୁ କନ୍ଧୁଚନ୍ଦ୍ର—

ବାବା ॥ ଆଗେ ଖରଚ୍ଚ ବାହାର କର।

ମାଗୁଣି ॥ କେତେ ମହାପ୍ରଭୁ ?

ବାବା ॥ ତୋ' ଖୁସିରେ ଭୁ ଦେ—ଆମ୍ଭେ ଦେଖୁଁ ।

ମାଗୁଣି ॥ (ଗାଣ୍ଠିଆରୁ ବାହାର କରି) ସ୍ୱ'କଟିଏ—ଅଣିଟିଏ—ମୋଟ ପାଞ୍ଚଣା । ( ପଇସା ଆସନରେ ରଖି ) ଆମ ଭକିଲ୍‌ବାବୁ କହୁଚନ୍ତି···

ବାବା ॥ ଏ ମକଦ୍ଦମାରେ ହାକମଙ୍କ ମନଟା ଟିକିଏ ଅପର ପକ୍ଷ ଆଡ଼କୁ ଢ଼ଳଚ, ଠିକ୍ ?

ମାଗୁଣି ॥ ( ଖୁସିହେଇ ) ଆଜ୍ଞା-ଆଜ୍ଞା-ଆଜ୍ଞା—

ବାବା ॥ ମକଦ୍ଦମା ରାୟ କେବେ ବାହାରିବ ? କାଲି ?

ମାଗୁଣି ॥ ଆହା, ସିଦ୍ଧ ପୁରୁଷ ଆପଣ—ସବୁକଥା ଆପଣଙ୍କୁ ଜଳ ଜଳ ଦେଖାଯଉଚ ।···ହାକମ ଶୁଣେଇ ଦେଇଚନ୍ତି—କାଲି ରାୟ ବାହାରିବ ।

ବାବା ॥ ( ଗୋଟିଏ ରୁଦ୍ରାକ୍ଷ ଦେଇ ) ନେ'—ଏ ରୁଦ୍ରାକ୍ଷଟିକୁ ଅଣ୍ଟାରେ ଖୋସ୍ ।

ମାଗୁଣି ॥ ( ବୁଝିନପାରି ) ଭକିଲ୍ କହୁଚ—ହାକମ ମନ ଅପର ପକ୍ଷ ଆଡ଼କୁ ଢ଼ଳଚ୍ଛି—ମୁଁ ଅଣ୍ଟାରେ ଖୋସିଲେ କଣ ହବ ?

ବାବା ॥ ମୂର୍ଖ । ହାକମ ମନ ଯୁଆଡ଼େ ଢ଼ଳୁଚ ଢ଼ଳୁ । ଏ ରୁଦ୍ରାକ୍ଷ ତୋ' ପାଖରେ ଥିଲେ, ରାୟ ଲେଖିଲା ବେଳେ ହାକମଙ୍କ କଲମଟା ତୋ' ଆଡ଼କୁ ଢ଼ଳିଯିବ । ବୁଝିଲୁ ?

ମାଗୁଣି ॥ (ଖୁସି ହୋଇ) ବୁଝିଲି ସାଧୁବାବା—ବୁଝିଲି ।

[ ମାଗୁଣି ବିଦାୟ ନେଲା । ପରବର୍ତ୍ତୀ ଦିନର କଥା । ସାଧୁବାବା ଯଥା ସ୍ଥାନରେ ବସିଛନ୍ତି । କଚେରୀ ବେଳା···ଦେଖାଗଲା

[ମାଗୁଣି ଖୁବ୍ ଖୁସି ମନରେ ଧାଇଁ ଧାଇଁ ଆସୁଚି । ସେ ଆସି ସାଧୁଙ୍କୁ ଅତି ବହ୍ବଳିତ ଭବରେ କୁଣ୍ଢାଇ ପକେଇଲା । ]

ବାବା ॥ ହିଁ—ହିଁ—ଇଏ କଣ ବାବା—କଥା କଣ ?

ମାଗୁଣି ॥ କଥା···କଥା ଫଳିଛି ବାବା ।

ବାବା ॥ ଫଳିଛି !

[ ମାଗୁଣି ଖୁସିରେ ଉଚ୍ଛୁଳ ପଡ଼ି କହି ଯାଉଥାଏ—ବାବା ମଧ ତା' କଥାରେ ଭସି ଯାଉଥାନ୍ତି ]

ମାଗୁଣି ॥ କାଲି ମୁଁ ଏଠିକି ଆସିଥିଲି

ବାବା ॥ ହିଁ

ମାଗୁଣି ॥ ଅଦାଲତରେ ଦବାମି ମକଦ୍ଦମା

ବାବା ॥ ଓ

ମାଗୁଣି ॥ ମୁଁ ମାଗୁଣି ପରିଡ଼ା—ପ୍ରତିବାଦୀ

ବାବା ॥ ବାଦୀ କିଏ ?

ମାଗୁଣି ॥ ଆମର ଗାଁ—ଆମର ସାଇର କରୁଣି ପରିଡ଼ା

ବାବା ॥ ହିଁ···

ମାଗୁଣି ॥ ମକଦ୍ଦମାରେ ହାକିମଙ୍କ ମନ କରୁଣି ପରିଡ଼ା ଆଡ଼କୁ ଢଳି ପଡ଼ିଥିଲା ।

ବାବା ॥ ଜାଣିଗଲି ।

ମାଗୁଣି ॥ ଆପଣ ରୁଦ୍ରାକ୍ଷ ଦେଲେ—ମୁଁ ଅଣ୍ଟାରେ ଖୋସିଲି

ବାବା ॥ ବାଃ ବେଟା !

[ ଏତିକି ବେଳେ କରୁଣି ସେଠିକି ଆସିଲା । ସେ ଦୁଃଖ ଓ ରାଗରେ ଜଳି ଯାଇ ଏ ଦୃଶ୍ୟ ଦେଖୁଥାଏ । ତା' ଉପରେ ମାଗୁଣି ଓ ବାବାଙ୍କର ଆଖି ପଡ଼ି ନ ଥାଏ ।]

ମାଗୁଣି ॥ ଆଜ ରାୟ ବାହାରିଲା । ହାକିମଙ୍କ କଲମ ମୋ ଆଡ଼କୁ ଚଳିଲା ।

ବାବା ॥ (ଖୁବ୍ ଖୁସିରେ) ବୁଝିଗଲି ।

ମାଗୁଣି ॥ ମୁଁ ମକଦ୍ଦମା ଜିତିଲି—କରୁଣି ପରିଡ଼ା ହାରିଲା— ( ଦୁହେଁ କୁଣ୍ଢାକୁଣ୍ଢି ହୋଇ ନାଚୁଥାନ୍ତି—ମାଗୁଣି କହି ଚାଲିଥାଏ ) କରୁଣି ପରିଡ଼ା ହାରିଲା—କରୁଣି ପରିଡ଼ା ହାରିଲା···

କରୁଣି ॥ (ଖୁବ୍ ଜୋର୍‌ରେ) ହେ ମାଗୁଣିଆ—ହେ ଘୁଷୁରି···

[ ଏ ଦୁହେଁ ରହିଗଲେ ]

କରୁଣି ॥ ହେ ସାଧୁ ବାବା—ଏଠି ଏ କଣ ଚାଲିଚି ?

ବାବା ॥ ଚାଲିଛି ବାବା, ଆନନ୍ଦ ମେଳା ଚାଲିଚି । ଏ ବାବା ଆସି ମୋ' ପାଖରେ ଧାରଣା ପଡ଼ିଲା । ତାକୁ ରୁଦ୍ରାକ୍ଷ ଦେଲି (ଖୁବ୍ ଖୁସିରେ) ସେ ମକଦ୍ଦମା ଜିତିଗଲା···

କରୁଣି ॥ ଆଉ ମୋ' ମକଦ୍ଦମା ?

ବାବା ॥ କଣ ବାବା କ ମକଦ୍ଦମା ?

କରୁଣି ॥ ମନେ ପଡ଼ୁନାହିଁ ? ଦେଢ଼ମାସ ତଳେ ଆସି ଧାରଣାରେ ପଡ଼ିଥିଲି ।···ଏଇ ତେଉଁରିଆ ଦେଇଥିଲ —ଏଇ ବାଁ ହାତରେ ବାନ୍ଧିଚି ।

(ଦେଖାଇଲା)

ବାବା ॥ ଜାଣିଗଲୁ—ବୁଝିଗଲୁ । ତୋ' ମକଦ୍ଦମା ରାୟ ବାହାରୁ —ତୁ ଜିତିବୁ ।

କରୁଣି ॥ ଜିତିବ ?

ବାବା ॥ ନିଶ୍ଚେ ଜିତିବୁ ।

କରୁଣି ॥ ଛନ୍ଦୁଆ ଜିତିବ—ଲେମ୍ବୁଆ ଜିତିବ—କଦଳିଆ ଜିତିବ !

ବାବା ॥ କଣ ଏମିତି କହୁଚ ବାବା ?

କରୁଣି ॥ ତମେ ପରା ସବଙ୍କ—ସବଜାଣ ! ବୁଝି ପାରୁ ନ କଣ କହୁଚ ? ଯୋଉ ମକଦ୍ଦମା ଜିତିବୁ ବୋଲି ସେ ଢୁଙ୍କୁଶିଆ ନାଚୁଚ—ମୁଁ ସେଇ ମକଦ୍ଦମାର ଅପର ପକ୍ଷ । ମୁଁ ବାଦୀ, ସେ ପ୍ରତିବାଦୀ । ଯୋଉ କରୁଣି ପରଡ଼ା ହାରିଲା—କରୁଣି ପରଡ଼ା ହାରିଲା ବୋଲି ସେ ପାଟି ହାଲେଲ୍ଲ କରୁଚ—ମୁଁ ସେଇ କରୁଣି ପରଡ଼ା । ବୁଝିଲ ? ସିଏ ଜିତିଲା—ମୁଁ ହାରିଲି ।

ବାବା ॥ ଏଥିରେ ଆମ୍ଭେ ଆଉ କଣ କରିବା ବତ୍ସ ? ମକଦ୍ଦମାରେ ତ ଜଣେ ଜିତିବ—ଜଣେ ହାରିବ !

କରୁଣି ॥ ଜାଣିଥିଲ ତ ଜଣେ ଜିତିବ—ଜଣେ ହାରିବ ! ଏ କୁକର୍ମ ତେବେ କଲ କାହିଁକି ?

ବାବା ॥ କୁକର୍ମ ! ଆମ୍ଭେ ସାଧୁବାବା—ଆମ୍ଭେ ପୁଣି କୁକର୍ମ କରିବୁ !

କରୁଣି ॥ କରିନ ? ଯୋଉ ମକଦ୍ଦମାରେ ମତେ ଜିତେଇବ ବୋଲି ମୋ' ହାତରେ ତେଉଁରିଆ ବାନ୍ଧିଲ—ସେଇ ମକଦ୍ଦମାରେ ତାକୁ ଜିତେଇବ ବୋଲି ତାକୁ ରୁଦ୍ରାକ୍ଷ ଦେଲ କାହିଁକି ?···ଦେଢ଼ମାସ ହୋଇଗଲା, ମୋ' ଘରଜା କ ଦୁଃଖରେ ମତେ ତା' ବାଁ ହାତରେ ଖୁଆଇଚ—ମୁହଁ ପାଖକୁ ହାତ ଯାଉ ନ ଥାଏ—ମୁହଁରେ ଭାତ ଡାଲି ନେସି ହୋଇ ଯାଉଥାଏ—ଆମେ ଗେରସ୍ତ ଘରଜା କାନ୍ଦ କାନ୍ଦ ନସ୍ତାନ୍ତ ହେଇ ଯାଇଚୁ ।—ଆଉ ଏଠି ଆସି ଦେଖିଲି ବେଳକୁ···

ବାବା ॥ ଶୁଣ୍ ବାବା, ଶୁଣ ମୋ' ବେଟା, ତୁ ଗୋଟିଏ କାମ କର । ତୁ ଅପିଲ୍ କର । ଅପିଲ୍‌ରେ ଆମ୍ଭେ ତୋତେ ଜିତେଇ ଦବା ।

କରୁଣି ॥ ଆଉ ମୋ' ଅପିଲ୍ ଉପରେ ସେ ଯେତେବେଳେ ଆଉ ଗୋଟାଏ ଅପିଲ୍ କରିବ, ତାକୁ ଜିତେଇ ଦବ ! ଭଣ୍ଡ ଠକ କୋଉଠିକାର—ରହ, ମୁଁ ତୋ ରଙ୍ଗ ଛଡ଼େଇ ଦଉଚି ।

[ପାଇକଗୁ ମାରି ପ୍ରସ୍ତୁତ ହେଲାବେଳକୁ ମାଗୁଣି ବାଧା ଦେଲା । ]

ମାଗୁଣି ॥ ହେ କରୁଣା ! ତୁ ସାଧୁବାବା ଦେହରେ ହାତ ଦେଲେ···

କରୁଣି ॥ କଣ କରିବୁ । ଘୁଷୁରିଟାଏ ତୁ, ମୋର କଣ କରିବୁ ?

ମାଗୁଣି ॥ ଦେଖିବୁ କଣ କରିବି—ଦେଖିବୁ···

[ ଦୁହିଁଙ୍କର ମାଡ଼ପିଟି ଆରମ୍ଭ ହୋଇଗଲା । ଟିକିଏ ପରେ ଜଣେ ପୋଲିସ୍ କନେଷ୍ଟବଲ୍ ଆସିଲା ]

କନଷ୍ଟେବଲ୍ ॥ ହେ—ହେ—ହେ—ଇଏ କଣ ହଉଚି ? ଛୁଡ଼୍—ଛୁଡ଼ ।

[ ଦୁହିଁଙ୍କୁ ଅଲଗା କରିଦେଲା । ]

କରୁଣି ॥ ଶୁଣ ସିପେହୀ ପୁଅ—ଏ ସାଧୁ ବାବୁ ମୋ'ଠୁ ଖରଚ୍ଚ ଖାଇ ତାକୁ ମୋକଦ୍ଦମାରେ ଜିତେଇ ଦେଇଚି ।

ମାଗୁଣି ॥ ମୁଁ ମାଗଣା ଜିତିନାହିଁ । ହକ୍ ପାଞ୍ଚଣା ପଇସା ଖରଚ୍ଚ ଦେଇଚି ।

କନେଷ୍ଟବଲ୍ ॥ ହୁଁ, ତମ୍ଭ ଦୁହିଙ୍କର ବାଘ ପାଲି ଚାଲିଥିଲା—ଆଉ ଏ ସାଧୁବାବା ମୃଦଙ୍ଗ ବଜଉଥିଲା । ହଉ, ବାଘ, ପ୍ରତିବାଘ ଆଉ ସାଧୁବାବା ସମସ୍ତେ ଥାନାକୁ ଚାଲ ।

ବାବା ॥ ଆମ୍ଭେ କି ଅର୍ଥେ ଥାନାକୁ ଯିବୁ ବାବା ?

କନଷ୍ଟେବଲ୍ ॥ ଥାନାକୁ ଚାଲ—ସେଇଠି ଅର୍ଥ ବୁଝିବ ।

[ ଅଙ୍କର ଦୃଶ୍ୟ ଶେଷ ହେଲା । ଆମେ ପୁଣି ଫେରି ଆସିଲୁ ପୂର୍ବବର୍ତ୍ତୀ ଦୃଶ୍ୟକୁ ]

[ ବାବାଜି ହସୁଥାନ୍ତି—ଜେମୀ ଓ ରାଧି ଆଁ କରି ବାବାଜି ମୁହଁକୁ ଚାହିଁରହିଥାନ୍ତି ]

ଜେମୀ ॥ ମଣିଷ କୁଆଡ଼େ ଯିବ ଲୋ ମା ! ଆକୁ କହୁଚି ତୁ ଜିତିବୁ—ତାକୁ କହୁଚି ତୁ ଜିତିବୁ—ଏ କେମିତିକା ସାଧୁ ବାବା !

ରାଧି ॥ ସେ ପରା କହୁଚି, ମାଗୁଣି କରୁଣି ଦୁହେଁ ସେଇ ଗୋଟାକ ମକଦ୍ଦମା ଲଢ଼ୁଚନ୍ତି ବୋଲି ସେ ଜାଣିନଥିଲା ।

ବାବାଜି ॥ ଏଇଥିରୁ ବୁଝ ମା, ସେ କୁଆଡ଼େ ସିଦ୍ଧ ପୁରୁଷ ! ତମମାନଙ୍କର ତ ବିଶ୍ବାସ ଯେ ଏମାନଙ୍କର ଅଲୌକିକ ମହିମା ଅଛି । ···ସାଧୁ ଅସାଧୁ କୌଣସି ଲୋକର ଅଲୌକିକ ମହିମା ହୋଇ ନପାରେ । ଏହା ଈଶ୍ବରଙ୍କ ନିୟମ ବିରୁଦ୍ଧ ।

ଜେମୀ ॥ ସତ ମହାରାଜ, ଆପଣ ଆଜି ଆମମାନଙ୍କ ଆଖି ଖୋଲି ଦେଲେ ।

ରାଧି ॥ ମୋ' ରୋଗ ଭଲ ହଉ କି ନହଉ ଆମର ଏଠିକି ଆସିବା ସାର୍ଥକ ହେଉଛି ।

ଜେମୀ ॥ ହଉ ବାବା, ଆମେ ଯାଉଛୁ ।

[ ଦୁହେଁ ପ୍ରଣାମ କରି ଠିଆ ହେଲେ ]

ରାଧି ॥ ( ଜେମୀକୁ ଏକାନ୍ତରେ ) ଆଲୋ ନାନୀ, ଫଳ ଗଡ଼ ଗଲାଣି—

ଜେମୀ ॥ ସତେ । ସେ ନଈ ବନ୍ଧରେ ଆମେ ଦୁହେଁ ଏକା···

ବାବାଜି ॥ କାହିଁକି ? ଡର କୋଉଥିଲୁ ?

ରାଧି ॥ ବନେ ବନେ ସେ ନଈ ଅଡଡ଼ା ରୁ ଭୂତ ବ୍ରହ୍ମରାକ୍ଷସ ଭଗ୍ନ ହୋଇଯାନ୍ତି ।

ବାବାଜି ॥ କେବେ ନିଜ ଆଖିରେ ଦେଖିଚ ?

ଜେମୀ ॥ (କିଛି କ୍ଷଣ ନୀରବ ରହି) ନାଇଁ ବାବା—ଏମିତି ଶୁଣା ଶୁଣିରେ ଯାହା ଆମ କାନରେ ପଡ଼ିଚି ।

ବାବାଜି ॥ କହୁଥିଲିନା, ଆମ୍ଭେ ତୁମ୍ଭ ଆଖି ଖୋଲି ଦେଇଛୁ । ପୁଣି ଏ ଅନ୍ଧ ବିଶ୍ୱାସ କୋଉଥିପାଇଁ ?

[ ଏଡିକବେଳେ ତୋଟା ସେ ମୁଣ୍ଡରେ ଦୁଇଜଣ ଶ୍ୱେତବସ୍ତ୍ର ପରିହିତ ପୁରୁଷଙ୍କର ଅସ୍ପଷ୍ଟ ମୂର୍ତ୍ତି ଦେଖାଗଲା । ରାଧିର ଦୃଷ୍ଟି ସେମାନଙ୍କ ଉପରେ ପଡ଼ିଚି ଓ ସେ ଡରି-ଯାଇଛି ]

ରାଧି ॥ ( ଡରରେ ) ଇଲେ ନାନା ଦେଖିଲୁ, ତୋଟା ସେ ମୁଣ୍ଡରେ ଦି ଟା ଧଳା ଧଳା କଣ ଦିଶୁଛି । ......
ଇଲେ ମା'ଲୋ......

[ ଜେମୀକୁ କୁଣ୍ଢେଇ ଧରିଲା । ଇତି ମଧ୍ୟରେ ସେ ଦୁଇମୂର୍ତ୍ତି ଅନ୍ତର୍ହିତ ହୋଇଗଲେଣି]

ଜେମୀ ॥ ଆଲୋ କାଇଁବା—କାଇଁ ? ...କିଛିତ ନାଇଁ...

ରାଧି ॥ ଇଲେ ସେ ଭୂତ ଦି'ଟା ତେବେ ମତେ ଦେଖା ଦେଇ କୁଆଡ଼େ ଉଭେଇ ଗଲେଣି । ...ନାନା ଲୋ ଭୂ...

[ ଅଚେତ ହୋଇ ପଡ଼ିଗଲା । ଜେମୀ ରାଧି ପାଖରେ ବସିପଡ଼ିଲା ]

ଜେମୀ ॥ ଇଲେ ଇଲେ ଇଏ କଣ ହେଲା । ରାଧି—ରାଧି—ରାଧାରାଣୀ ( ରାଧିର ମଥାକୁ କୋଳରେ ରଖି) କାଇଁତ

ଶୁଣୁ ନାହାଁ—ତା' ଚେତା ବୁଡ଼ିଗଲାଣି । (କାନ୍ଦି)
ମହାରାଜ, ମୋ ଭେଳା ବୁଡ଼ିଗଲା ।···

ବାବାଜି ॥ ଆହା, ଏତେ ଅସ୍ଥିର କାହିଁକି ? ଟିକିଏ ଥୟ ହୁଅ ।

କେମି ॥ କଣ ଆଉ ଥୟ ହେବି ମହାରାଜ !

କେମି ॥ (କାନ୍ଦି କାନ୍ଦି) —ଗୀତ—(କାନ୍ଦଣା ସ୍ୱର)
କେମିତି ମୁଁ ଥୟ ହେବି କୁହନ୍ତ···ହେ ମହାରାଜ
ଭୂତ ଗ୍ରାସିଲେ ତ ହୁଏ ଏମନ୍ତ···ହେ ମହାରାଜ
ଅତି ସୁକୁମାରୀ (ମୋ) ରାଧା ସୁନ୍ଦରୀ···ହେ ମହାରାଜ
ହାହା ହାତ ଝାଳେ ଯାଉଚି ବୁଡ଼ି···ହେ ମହାରାଜ
ଯେମିତି ଭୂତର ଦୃଷ୍ଟି ପଡ଼ିଲା···ମୋ' ରାଧାରାଣୀ
"ଭୂ" କହି ତଳେ ଲେଟି ପଡ଼ିଲା···ମୋ' ରାଧାରାଣୀ

ବାବାଜି ॥ ଆହେ ଶୁଣ, ଶୁଣ—ମୋ କଥା ଶୁଣ । କାହିଁକି ଏତେ
କାନ୍ଦୁଚ । ଏ ଭୂତ ପ୍ରେତ ସବୁ ମିଛ । ତା' କାନ
ଫୁଙ୍କିଲ ।

[ କେମି ରାଧାର କାନ ଫୁଙ୍କିଲା । ଫଳ
କିଛି ହେଲା ନାହିଁ । କେମି ସେମିତି କାନ୍ଦୁଥାଏ ]

କେମି ॥ ( ଗୀତ )
ଫୁଙ୍କି ଫୁଙ୍କି କିଛି ହଉଚି ନାହିଁ···ହେ ସାଧୁବାବା
ଆଖିମେଲା-ପତା ପଡ଼ୁଚି ନାହିଁ···ହେ ସାଧୁବାବା
ଭୂତ ଆସି ଶୂନ୍ୟେ କରୁଡ଼ିଦେଲା···ହେ ସାଧୁବାବା
[ ରାଧି ବେକ ବଙ୍କେଇଲା ]
ରାଣୀ ମୋର ହୋଇ ଡ଼ଙ୍କ ମୋଡ଼ିଲା···ହେ ସାଧୁବାବା

[ ଅଦ୍ଭୁତ ବିକଳ ହୋଇ କାନ୍ଦିଲା
ରାଧିର ହାତ ଗୋଡ଼ ମେଲା ହେଇଗଲା ]

ସୁରକାତ ସିନା ମେଲ ଦେଲୁଣି···ମୋ' ମା' ରାଣୀ
ଡୋହି ସାଙ୍ଗେ ମତେ ନେ ଭୁ ଟାଣି···ମୋ' ମା' ରାଣୀ

ବାବାଜି ॥ ଆରେ, ଏ'ତ ବଡ଼ ଅବୁଝା ଲୋକ । ମୁଁ ଯାହା କହୁଛି କର—ତାକୁ ଉଠେଇ ତମ କୋଳରେ ବସାଅ ।···ହଁ, କୋଳରେ ଆଉଜାଇ ବସାଅ ।

[ଜେମୀ ନିର୍ଦ୍ଦେଶ ପାଳନ କଲା । ବାବାଜି କମଣ୍ଡଳରୁ ପାଣି ଆଣି ଦଶରଥର ରାଧି ମୁହଁକୁ ଛିଞ୍ଚିଲେ । ଫଳରେ ରାଧି ଟିକିଏ ଚଞ୍ଚଳ ହୋଇ ଉଠି ଆଖି ବୁଜିଲା ]

ବାବାଜି ॥ ପଡା ପଡ଼ୁ ନଥିଲା ପରା । ଦେଇ ଦେଖ, ଆଖି ବୁଜିଲାଣି ।

ଜେମୀ ॥ ଚେତା ଫେରୁ ନାହିଁ କାହିଁକି ?

ବାବାଜି ॥ ଫେରିବ···ଫେରିବ । ( ବଡ଼ ପାଟିରେ ) ତୋଟା ସେ ମୁଣ୍ଡରେ କିଏ ଛପି ରହିଛ ବାବା, ଏଠିକି ଆସ ।

[ ଦୁଇ ଜଣ ପୂର୍ଣ୍ଣବୟସ୍କ ଯୁବକ-ଶିବ ଓ ଜେମସ୍ ଧୀର ପାଦରେ ତୋଟା ସେ ମୁଣ୍ଡରୁ ବାହାରି ଆସିଲେ ]

ବାବାଜି ॥ ଆସ ବାବୁମାନେ, ଡ଼ରୁଚ କାହିଁକି—ଚାଲିଆସ ।

[ ଶିବ ଓ ଜେମସ୍ ଆସିଲେ । ଦୁହିଁଙ୍କର ପରିଧାନ ଧଳା ଧୋତି, କୁର୍ତ୍ତା ଓ ଚଦର । ହାତରେ ବଙ୍କୁଲିବାଡ଼ି (walking tick) । ଦୁହେଁ ଯେପରି ଶଙ୍କି ଯାଇଛନ୍ତି । ଦୁହେଁ ବାବାଜିଙ୍କୁ ପ୍ରଣାମ କଲେ ]

ଶିବ ॥ ଏଠି କାହାର କାନ୍ଦଣା ଶୁଭିଲା ?

ବାବାଜି ॥ ଯାହାକୁ ତୁମେ ଡ଼ରେଇଲ, ସେଇ କାନ୍ଦିଲା ।

[ ଜେମୀ ଶିବକୁ ଚିହ୍ନିଲାଣି ]

ରାଧି ॥ ( କ୍ଷୀଣ ସ୍ୱରରେ ) କିଏ ନାମା ।

ବାବାଜି ॥ ଉଠି ଦେଖ ମା, ଭୂତ ନୁହନ୍ତ—ମଣିଷ ।

[ ଏ ଦୁହେଁ ଉଠି ଠିଆ ହେଲେ ]

ଏ ବାବୁଙ୍କୁ ଚହ୍ନିଚ ମା ?

ଜେମୀ ॥ ହଁ ।

ବାବାଜି ॥ ତୁମେ ଦୁହେଁ କୁଆଡ଼େ ଆସିଥିଲ ବାବା ?

ଜେମ୍ସ୍ ॥ ଆପଣଙ୍କ ଦର୍ଶନକୁ ।

ବାବାଜି ॥ ତେବେ ସିଧା ସଳଖ ଏଠାକୁ ଆସିଲ ନାହିଁ କାହିଁକି ?

ଶିବ ॥ ଠିକଏ ନବେଳାରେ ଆପଣଙ୍କୁ ଦେଖା କରବୁ— ସେଥିପାଇଁ ତୋଟା ସେ ମୁଣ୍ଡରେ ଅଟକ ଗଲୁ ।

ବାବାଜି ॥ ତୁମେତ ଅଟକ ଗଲ—ତୁମକୁ ଭୂତ ପ୍ରେତ ମନେକର ଏହାଙ୍କର ଚେତା ବୁଡ଼ଗଲା ।

ରାଧି ॥ ଥରେ ଜାଣିଥିଲେ କ ଛୁଙ୍କି ଥିଲେ ଆମେ ମଣିଷ ବୋଲ ଜାଣିଥା'ନ୍ତୁ ।...ଆ' ନାନ୍ନା, ଯିବା ।

ଜେମୀ ॥ ଚାଲ । ଆମେ ଯାଉଚୁ ବାବା ।

ବାବାଜି ॥ ( ହସି ) ଆଉ ଡରବା ନାହିଁତ ?

ଜେମୀ ॥ ଦେଖିଲୁତ, ଭୂତ ବୋଲ ଯାହାଙ୍କୁ ଡରଲୁ, ସିଏ ମଣିଷ । ଆଉ ଡର କେଁ କଥାକୁ ? ଯାଉଚୁ ।

[ ବାବାଜିଙ୍କୁ ପ୍ରଣାମ କର ଦୁହେଁ ବିଦାୟ ନେଲେ ]

ବାବାଜି ॥ ଆଚ୍ଛା, ବାବୁମାନେ...

[ ଦୁହେଁ କିଛି ପଇସା ବାବାଜିଙ୍କ ପାଖରେ ରଖି ହାତ ଯୋଡ଼ ଠିଆ ହେଲେ ]

ଶିବ ॥ ମୁଁ ବଙ୍ଗଦେଶର ଲୋକ । ମାତ୍ର ଦୁଇ ପୁରୁଷ ହେବ ଏ ପ୍ରଦେଶରେ ଚାକରି କର ଆମେ ଏଠି ସ୍ଥାୟୀ ବାସିନ୍ଦା ହେଇଚୁ । ମୋର ପିତା ଅସୁସ୍ଥ...

ଜେମସ୍ ॥ ମୁଁ ଏ ଦେଶୀୟ ଓଡ଼ିଆ । ଗୃକଗ୍ରି କରୁଥିଲି—ଏବେ ଗୃକଗ୍ରି ଗୃଲି ଯାଇଛି ।

[ ବାବାଜି ଲକ୍ଷ୍ୟ କଲେଣି ଯେ ଏ ଦୁହେଁ ମଦ୍ୟ ପାନ୍ କରି ଆସିଛନ୍ତି, ଯଦ୍ଦାରା ଅବସ୍ଥା ଅସମ୍ଭାଳ ହୋଇଛି ]

ବାବାଜି ॥ ହୁଁ ।

ଶିବଚରଣ ॥ ମୁଁ ଶିବଚରଣ—ବଙ୍ଗାଳି ହିନ୍ଦୁ ।

ଜେମସ୍ ॥ ମୁଁ ଜେମସ୍—ଓଡ଼ିଆ କରସ୍ତାନ ।

ଶିବଚରଣ ॥ ଆପଣ ଟିକିଏ କରଣୀ କାଟିଲେ ଆମ ଦୁହିଁଙ୍କ ଦୁଃଖ ଦୂର ହେବ ।

ବାବାଜି ॥ ଆମ୍ଭେ ସଂସାର ତ୍ୟାଗୀ ସାଧୁ । ଆମ୍ଭ ନିକଟରେ ଓଡ଼ିଆ ବଙ୍ଗାଳି ହିନ୍ଦୁ କରସ୍ତାନ ସବୁ ସମାନ···ତା' ପରେ ମୁଁ କବିରାଜ ନୁହେଁ (ଶିବଙ୍କୁ) ତୁମ ପିତାଙ୍କୁ ଭଲ କରି ପାରିବି ନାହିଁ । ଆଉ (ଜେମସ୍‌କୁ) ମୁଁ ତୁମ ଗୃକଗ୍ରି ନେଇ ନାହିଁ—ତେଣୁ ଗୃକଗ୍ରି ଫେରାଇ ଦେଇ ପାରିବି ନାହିଁ ।

ଶିବ ॥ ଆପଣ ସିଦ୍ଧ ପୁରୁଷ—

ଜେମସ୍ ॥ ଆଜି ଗୋଟିଏ ମଲା କୁକୁଡ଼ାକୁ ଆପଣ ବଞ୍ଚାଇ ଦେଇଛନ୍ତି ।

ବାବାଜି ॥ ଛି-ଛି । ଆପଣମାନେ ବିଦ୍ୟାବନ୍ତ ଲୋକ—ଏମିତି ଅନ୍ଧ ବିଶ୍ୱାସ ରଖିଛନ୍ତି । ପୁଣି ଆମ୍ଭର ଯାହା ଅସ୍ପୃଶ୍ୟ, ସେମିତି ନିଶା ଦ୍ରବ୍ୟ ସେବନ କରି ଏଠିକି ଆସିଛନ୍ତି । ଆମ୍ଭର ବଡ଼ ଦୁଃଖ ହେଉଚି—ଆମ୍ଭେ ଆଉ ସହି ପାରିବୁ ନାହିଁ । ଏ ପ୍ରଣାମୀ ପଇସା ଫେରାଇ ନେଇ ଆପଣମାନେ ଯା'ନ୍ତୁ ।

[ ଏ ଦୁହେଁ ବିବ୍ରତ ଓ ଅପଦସ୍ଥ ହୋଇ ପଡ଼ିଲେ । ଦୁଇ ପାଦ ପଛକୁ ଘୁଞ୍ଚିଯାଇ ମୁହଁ ତଳକୁ କରି ଠିଆ ହେଲେ ]

ଶିବ ॥ କ୍ଷମା କରନ୍ତୁ । ଆମର ଭ୍ରମ ଜାତ ହୋଇଥିଲା ।

ଜେମସ୍ ॥ ଦୟା କରନ୍ତୁ । ଆମେ କାଲି ସକାଳେ ଆସି ସାକ୍ଷାତ୍ କରିବୁ ।

ବାବାଜି ॥ ଆଚ୍ଛା, କାଲି ସକାଳେ ଶୁଦ୍ଧ ମନ ଶୁଦ୍ଧ ଶରୀରରେ ଆସିବ । ଭଲମନ୍ଦ କଥା ହେବା···ଯାଅ ।

[ ଦୁହେଁ ଯେତେ ଚଞ୍ଚଳ ପାରନ୍ତି ପଇସା ଉଠେଇ ନେଇ ଚାଲିଗଲେ ]

ବାବାଜି ॥ (ମୃଦୁହସି) ବିଚିତ୍ର ଏ ସଂସାର ।

[ ବାବାଜି କମଣ୍ଡଳୁ ଉଠାଇ ପାଣି ପିଇବାକୁ ଉଦ୍ୟତ ହେଲା ବେଳକୁ ପୂଝାରୀ ଆସି ପହଞ୍ଚିଲା । ବାବାଜି ପାଣି ପିଇନଥାନ୍ତି । ହାତରେ ଗୋଟିଏ ପାତ୍ରରେ ପ୍ରସାଦ, କଦଳୀ ଫଳ ଓ ଜଳପୂର୍ଣ୍ଣ ଗୋଟିଏ ଗଡ଼ୁ ପୂଝାରୀ ଆଣି, ସେ ସବୁକୁ ବାବାଜିଙ୍କ ସମ୍ମୁଖରେ ରଖି ପ୍ରଣାମ କରିବା ସଙ୍ଗେ ସଙ୍ଗେ କଥା ଆରମ୍ଭ କରି ଦେଇଛି ]

ପୂଝାରୀ ॥ ଦୋହାଇ ବାବାଜି ମହାରାଜ, ପାଣି ପିଅନ୍ତୁ ନାହିଁ— ପିଅନ୍ତୁ ନାହିଁ । (ଉଠି ବସିଲା)

ବାବାଜି ॥ କିରେ ପୂଝାରୀ ବାବା, ତୁ ପୁଣି କାହିଁକି ?

ପୂଝାରୀ ॥ ମୋ' ପାଇଁ ଆପଣ ଆଜି ଦିନ ସାରା ଉପବାସ ରହିଛନ୍ତି । ମୁଁ ଆପଣଙ୍କ ପାଇଁ ପ୍ରସାଦ ଆଣି ଆସିଛି ।

ବାବାଜି ॥ ପ୍ରସାଦ ? ଆମ ପାଇଁ ? କାହିଁକି ବାବା ଆମ ପାଇଁ ତୋ' ମନରେ ଏତେ ଦୟା ?

ପୂଝାରୀ ॥ ବାବା ମହାରାଜ, ଆଜକାର ଘଟଣା ପାଇଁ ମୁଁ ମୋ-
ମୁହଁ ଟେକ ଆପଣଙ୍କୁ ଚାହିଁ ପାରୁନାହିଁ ।

—ଗୀତ—

ବାବାହେ, ଆଉ ଦିଅନା ଲାଜ,
ମୋହ ଲାଜେ ମୁହିଁ ମରି ଶୋଇଲଣି
ମୋହ ଦୁଃଖ ଟିକେ ମନରେ ହେଜ ॥

ପୂଝାରୀ ॥ କେତେ ଆଶାକରି ପ୍ରସାଦ ଏତକ ଆଣିଛୁ । ଆପଣ
ସେବନା କରନ୍ତୁ ।

ବାବାଜି ॥ ( ହସି ) ଆଚ୍ଛା ଆଚ୍ଛା ।—ଗୀତ—
ହଉ ହେଲା ଆମେ ପ୍ରସାଦ ପାଇବା
ତୁ ପଛ କହିବୁ ଗୋଟିଏ କଥା

ପୂଝାରୀ ॥ କି କଥା ମହାରାଜ ?

ବାବାଜି ॥ ( ଗୀତ ) ଜୀଅନ୍ତା କୁକୁଡ଼ା କିଏ ଆଣି
କିଆଁ ରଟାଇଲୁ ଆମ୍ଭ ନାମରେ ମିଥ୍ୟା ॥

ପୂଝାରୀ ॥ ଆପଣ ଭୋଜନରେ ବସନ୍ତୁ । ମୁଁ କହିବି । ଭୋଜନ
ବେଳେ କଥାବାର୍ତ୍ତା ଦୁହିଁଙ୍କୁ ଭଲ ଲାଗଇ ।

ବାବାଜି ॥ ହଉ, କଣ ଆଣିଛୁ, ଆଣ ।

[ ପୂଝାରୀ ବାଢ଼ି ଦେଲା । ବାବାଜି
ଭୋଜନରେ ବସିଲେ ]

ପୂଝାରୀ ॥ ଏ ଲୋକ ଗୁଡ଼ିକ ଭାରି ମୂର୍ଖ-ନିବୁଦ୍ଧିଆ । ମାତ୍ର
ମୋର ଭାରି ବୁଦ୍ଧି—ଭାରି ସାହସ । ମୋ ମନ ହେଲେ
ମୁଁ ତାଙ୍କୁ ମଚେଇ ଦିଏ ।

ବାବାଜି ॥ ଏମିତ୍ତ ମିଛ କଥାରେ ?

ପୂଝାରୀ ॥ ହଁ । ଗୁଣୀ ଗାରଡ଼ି କାଟେଣୀ ବିଦ୍ୟାକୁ ସେମାନେ ଅଛି
ଭଲ ମାନନ୍ତି—

—ଗୀତ—

ତୋଳା ନେଉଥାଇ ମୁଁ ଯଦି କହିବି
କୁତା'ଟାକୁ କରିଦେବି ମୁଁ "କୁତି" ।
ଇତର ଲୋକଙ୍କ କଥାକେ ପଶୁରେ
ବାବୁ ଭାୟା ମାନେ ଯା'ନ୍ତି ମାତି ॥

ବାବାଜି ॥ ଅହୋ ! କି କୁସଂସ୍କାର—ଅନ୍ଧବିଶ୍ୱାସ !

ପୂଝାରି ॥ ମୁଁ ଗୁଣୀଗାରଡ଼ି କରେ—ମନ୍ତ୍ରୀ ପାଣି ଦିଏ—ଭୂତ ଡାଆଣୀ ଛଡ଼ାଏ ।

ବାବାଜି ॥ ମାତ୍ର ଏସବୁ ମିଛ-ଭଣ୍ଡାମି । ଏଇଆ ନା ?

ପୂଝାରି ॥ ଆପଣ ତ ସବୁ ବୁଝୁଥିବେ ମହାରାଜ । ......ଖା'ନ୍ତୁ ମହାରାଜ—ଦୋହାଇ ଆପଣଙ୍କୁ ମନ ଖୁସିରେ ଖା'ନ୍ତୁ । ଲକ୍ଷ୍ମୀ ବିଳାସ ଗୁଡ଼ଳରେ ଭଜା ଖିରୁଡ଼ି—ଜାଇ ମୁଗ ବଣ୍ଟଳ କଦଳୀ ବାର ବାଇଗଣ ଖମ୍ବଆଳୁ ସଜନାଛୁଇଁ ଡାଲମା ଆଛା କରି ଗାଈ ଘିଅ ଜିରା ଲଙ୍କାରେ ଛୁଙ୍କ କରିଛୁ । ଆଉ ଷିଶ ତ...

ବାବାଜି ॥ ଭଲ—ଭଲ—ଅତି ଉତ୍ତମ ପ୍ରସାଦ ।...ଆଚ୍ଛା, ଆମ୍ଭେ ତୋତେ ଗୋଟିଏ ଗୁପ୍ତ କଥା ପଚାରିବୁ । ହନୁ ସିଂ ଶାଇଁ ଯାକୁ ଭୂତ ଲଗିଥିଲା । ତୁ ତା' ଭୂତ ଛଡ଼େଇଛୁ । ଏଥିର ପ୍ରକୃତ କଥା କଣ କହନା ?

ପୂଝାରି ॥ ମହାରାଜ, ଏକଥା କହିଲେ ଷଟ୍‌କର୍ଣ୍ଣ ମନ୍ତ୍ର ଭେଦ ହେବ ମୋ' ବୃତ୍ତି ମାରିଯିବ । ମତେ କ୍ଷମା କରନ୍ତୁ ।

ବାବାଜି ॥ ଆମ୍ଭେ କଥା ଦଉଛୁ, ଏକଥା କୋଉଠି ପ୍ରକାଶ କରିବୁ ନାହିଁ । ଏତିକି ବିଶ୍ୱାସ ଯଦି ତୋର ମୋ' ଉପରେ ନାହିଁ, ଆମ୍ଭେ ତୋ' ପ୍ରସାଦ ଆଉ ଭୋଜନ କରିବୁ କପର । ଏତକ ନଦୀ ଜଳରେ ଭସେଇ ଦେବୁ ।

ପୂର୍ବାଶା ॥ ନାଇଁ ମହାରାଜ, ଆପଣଙ୍କୁ ମୁଁ ଗୁରୁତୁଲ୍ୟ ମାନୁଛି । ମୋ ଭିତର କଥା ଏ ଖଣ୍ଡମଣ୍ଡଳରେ କେହି ଜାଣନ୍ତି ନାଇଁ । ଆପଣଙ୍କୁ କହିବି । ଆପଣ ମୋ' କଥା ଶୁଣି ମତେ ଏଠୁ ତଡ଼ି ଦେବେ ନାହିଁତ ? ମୋ' ଉପରେ ରାଗିବେ ନାହିଁତ ?

ବାବାଜି ॥ ଆମ୍ଭେ କାହାରି ଉପରେ ରାଗୁନା । ତୁ କହ ।

ପୂର୍ବାଶା ॥ କହୁଚି ଆଜ୍ଞା ! ··· ମୁଁ ତ ପୂର୍ବାଶା ନର୍ତ୍ତକ । ସମସ୍ତଙ୍କ ଘରକୁ ମୋର ଯାତ ଆତ । ହନୁ ସିଂ ଘରକୁ ଯାଏ । ହନୁ ସିଂ ଭାର୍ଯ୍ୟା ନା କଳାବତୀ । ତା'ର ଏ କଳାବତୀ ନାଁ ଟା ମୋ' ମନକୁ ଚହଲେଇ ଦେଲା । ମୁଁ ତା' ଆଡ଼କୁ ଢଳି ପଡ଼ିଲି । ଦେଖୁଁ ଦେଖୁଁ ସେ ପିଲାଟା ବି ମୋ' ଆଡ଼କୁ ଢଳି ପଡ଼ିଲା । ଆମ ଭିତରେ ଗୋପନ ପ୍ରୀତି କାରବାର ଚାଲିଥାଏ । ସେଦିନ ଠିକଏ ମୁହଁ ଶୁଖେଇ ମୁଁ କଳାବତୀ ପାଖକୁ ଗଲି—କଳାବତୀ ହଉଚି ଅଠର ଉଣେଇଶି ବର୍ଷ ବୟସର ଯୁବତୀ ବୋଲି ମୁଁ ତା' ପାଖକୁ ଗଲି—

= ସେଇ ଅତୀତ ଘଟଣାର ଦୃଶ୍ୟ =

କଳାବତୀ ॥ (ସୁଁ ସୁଁ କାନ୍ଦ) ଏତେ ଦିନକେ ମନେ ପଡ଼ିଲା ?

ପୂର୍ବାଶା ॥ ( ଦୁଃଖରେ ) କେତେଦିନ ହେଲା କହିଲୁ ?

କଳାବତୀ ॥ ତେମେ ଜାଣିନ କେତେଦିନ ?

—ଗୀତ—

ଗାରକାଟି ଦିନ ଗଣିଚି
ହେଲା ସତର ଦିନ
ମୁହଁଛପା ଦେଇ ରହିଚ
ନାହିଁ ଦେଖା ଦର୍ଶନ । ୧ ।

ଅବଳା ମୁଁ ପର-ଘରଣୀ
ଜାଗେ ମନରେ ଭ୍ରାନ୍ତ
ଏଡ଼େ ଦଗାଦିଆ କପଟୀ
ତୁମେ ପୁରୁଷ ଜାତ । ୨ ।

( କାନ୍ଦୁଥାଏ )

ପୂର୍ଣ୍ଣାଙ୍ଗ ॥ କାନ୍ଦନାଇଁ କଳା, ତୁ କାନ୍ଦ୍ ନାଇଁ

କଳାବତୀ ॥ —ଗୀତ—

କହୁଥିଲ କଏ ଶୁଣିଛୁ
ତୁମେ ଗୁଣୀ ଗାରୁଡ଼
ଶିଖିଚ; ସେପାଇଁ ମୋ'ଠାରୁ
ମନ ଗଲାକ ଛାଡ଼ । ୩ ।

ପୂର୍ଣ୍ଣାଙ୍ଗ ॥ କଳାବତୀ ଲୋ, ସେଇ ଗୁଣୀ ଗାରୁଡ଼ !

କଳାବତୀ ॥ ସତରେ ତୁମେ ଶିଖିଚ ?

ପୂର୍ଣ୍ଣାଙ୍ଗ ॥ ଶିଖିଚି ଯେ, କୁଆଡ଼୍ କଣ୍ଟୁ ହୋଇ ପାରୁନି ।

କଳାବତୀ ॥ କାଇଁକି ଲୋ ?

ପୂର୍ଣ୍ଣାଙ୍ଗ ॥ ମୋ' ଗାଁର କୁଆଡ଼େ ପ୍ରକଟ ହଉନାହିଁ—ଭୂତ କି ଡାହାଣୀ ଲଗିଲେ କେହି ମତେ ଡ଼ାକୁ ନାହାନ୍ତି । ହଁ' ପଇସା ରୋଜଗାର ହବ କେମିତି ?

କଳାବତୀ ॥ କଣ କରିବ ତେବେ ?

ପୂର୍ଣ୍ଣାଙ୍ଗ ॥ ମୁଁ ନୁହେଁ, ଯାହା କରିବାର କଥା, ତୁ କରିବୁ ।

କଳାବତୀ ॥ ମୁଁ ? କହୁବଟି କହୁବଟି ମୁଁ କଣ କରିବ ?

ପୂର୍ଣ୍ଣାଙ୍ଗ ॥ —ଗୀତ—

ତୁହି ଯେବେ କଳାବତୀ ଲୋ
ମୋର ହୋଇବୁ ସାହା
ଏ ଗୁଣି ଗାରୁଡ଼ି ଧନ୍ଦାରେ
ମତେ ମିଳିବ ରାହା । ୪ ।

ମିଛେ ମିଛେ ତୋତେ ଲଗିବ
ଖରାବେଳେ ଡାହାଣୀ
ଗୁଣିଆ ହୋଇ ମୁଁ ଝାଡ଼ବ
ତୋତେ, ହୃଦୟ ରାଣୀ । ୫ ।

କଳାବତୀ ॥ ମି-ମି-ମି-ମିଛ ଡାହାଣୀ !

ପୁଷ୍ପାସ୍ତ୍ର ॥ ତୋ' ପାଟି କାଇଁକି ଖନ ବାଜ ଯାଉଛି ?

କଳାବତୀ ॥ କହୁନ ମିଛ ଡାହାଣୀ ! ମିଛ ହଉଁ ହଉ ପଛ ମତେ ସତ ଡାହାଣୀ ଲଗିଯାଏ ।

ପୁଷ୍ପାସ୍ତ୍ର ॥ ସତ ଡାହାଣୀ ବୋଲିତ ଏ ଦୁନିଆରେ କିଛି ନାହିଁ । ତୋତେ ଲଗିବ କଣ ?···ଡାଆଣୀ କେମିତି ଲଗେ ତୁ ଜାଣିଚୁ ତ ?

କଳାବତୀ ॥ ମ···ଲ । ମୋ' ଭଉଜ ବାହା ହୋଇ ଆସିବାର ମାସ ପୂରି ନାଇଁ ତାକୁ ଡାହାଣୀ ଲଗିଲା ।

ପୁଷ୍ପାସ୍ତ୍ର ॥ ମିଛ ଡାହାଣୀ ନା ସତ ଡାହାଣୀ ?

କଳାବତୀ ॥ ପ୍ରେମପତ୍ର—ପ୍ରେମପତ୍ର ଢଙ୍ଗ । ଭାଇ ମୋର ଯେମିତି ତା' ଚୂଳରା ଜାଗାକୁ ଯାଇଚ, ଯାଆକୁ ଏଣେ ମିଛ ଡାହାଣୀ ଲଗିଲା । ଛ୍ୟା—ଛ୍ୟା—ଛ୍ୟା । ହଁ, ଶୁଣ, ତମ କଥା ମୁଁ ରଖିଲି—ମତେ ମିଛ ଡାହାଣୀ ଲଗିଲା । ସେଇଠୁ ?

ପୁଷ୍ପାସ୍ତ୍ର ॥ ଗୁଣିଆ ଆସିବ ତୋତେ ଝାଡ଼ିବାକୁ—

କଳାବତୀ ॥ ହଉ ଗୁଣିଆ ଆସିଲା । ସେଇଠୁ ?

ପୁଷ୍ପାସ୍ତ୍ର ॥ ସେ ଯେମିତି ମନ୍ତ୍ର ପଢ଼ି ତୋତେ ଫୁଙ୍କିବ, ତୁ ଚଢ଼ି ବସିବୁ ।

କଳାବତୀ ॥ ଚଢ଼ି ବସିବ କଣ ବା ? କହବତ ସେ ଗୁଣିଆ ଉପରକୁ ଖିଙ୍କାରି ଉଠି ତା' ନାକକୁ କାମୁଡ଼ ଦେବ ।

ପୂର୍ଣ୍ଣାଂଶ ॥ ସାବାସ୍—ସାବାସ୍ ମୋ କଳାବତୀ ।

କଳାବତୀ ॥ ସେତିକି ବେଳୁ ଆସି ଠିଆ ହୋଇଚ । ଆଗେ ବସିବଟି ବସ ।

[ ଦୁହେଁ ବସିଲେ ]

ପୂର୍ଣ୍ଣାଂଶ ॥ ସେଇଠୁ କଣ ହବନା···

କଳାବତୀ ॥ ତେମେ ରହିବଟି । କୋଉ ଦନୁଁ ଦେଖିନ । ତମ ମୁହଁକୁ ଟିକେ ଭଲକରି ଦେଖେଁ—ତେଣିକି କଥାଭାଷା···

ପୂର୍ଣ୍ଣାଂଶ ॥ ହଉ ହେଲା । ମୋ ମୁହଁ ତୁ ଦେଖ୍ । ତେଣିକି ମୋ' କଥା ମୁଁ କହିବ ।

[ ପରଦନର ଘଟଣା । ଏକ ନିର୍ଜନ ସ୍ଥାନ । ଉପସ୍ଥିତ ପୂର୍ଣ୍ଣାଂଶ ଓ ଏକ ଗ୍ରାମ୍ୟ ଯୁବକ ନବୀନା ]

ପୂର୍ଣ୍ଣାଂଶ ॥ ତୁ ଦେଖିବୁ ନବୀନା—ଏ ଗୁଣୀ ଗାରଡ଼ି ବିଦ୍ୟାରେ ମୁଁ ପକ୍କା ପାରଙ୍ଗମ ହୋଇଯିବି । ତୁ ଯଦି ମୋ' କଥାରେ ଚଳିବୁ, ତେବେ ମୁଁ ତୋତେ ମୋର ଗୁଣିଆ ସର୍ଙ୍ଗୀ କରିବ । ତୁ ବି ଦିପଇସା ପାଇବୁ ।

ନବୀନା ॥ ମୁଁ ତ କହୁଛି ପୂର୍ଣ୍ଣାଂଶ ଭାଇନା—ତେମେ ଯାହା କହିବଇଁ, ମୁଁ କରିବି । ମତେ ପାଣି ଡେଇଁ କହିଲେ ମୁଁ ନିଆଁକୁ ଡେଉଁ ପଡ଼ିବ ।

ପୂର୍ଣ୍ଣାଂଶ ॥ ହଉ ନେ, ଏହାକୁ ରଖ । ( ଗୋଟିଏ ଛୋଟ ମୁଡ଼ିଆ ଦେଲା )

ନବୀନା ॥ କଣ ଇଏ ?

ପୂର୍ଣ୍ଣାଂଶ ॥ ( ଟିକିଏ ନମ୍ରସ୍ୱର ) ଗୋଟାଏ ଭଙ୍ଗା ଲୁହା କଣ୍ଟା—ନଖ—ଚେର—ଏସବୁ ବାଳରେ ଗୁଡ଼ା ହେଇଚି ।

ନବୀନା ॥ (ମୁହଁ ବକ୍ରତ କରି ) ଭାଇନା···

ପୂର୍ବାଶା ॥ ଏଠି ଫେଖ୍‌ନା କାଢ଼ନା—ଫେଖ୍‌ନା ବେଳ ଆସୁଚ । ···କଣ କହୁଚି ମୁଁ ତୋତେ ?

ନଗାନା ॥ ଜାଣିଚି । (ଅଭିନୟ କରି) ଏମିତ ପେଟକୁ···ପେଟକୁ ଚୁପି ଧରି ବାପଲେ ମା'ଲେ ହେଇ ଘରକୁ ଧାଇଁବ । ଘରେ ଯାଇ ଏମୁଣ୍ଡ ସେମୁଣ୍ଡ ଗଡ଼ିବ । ବୋଉ ପଚାରିଲେ କହିବ—ହୁ କନା ପେଟକୁ ମାରିଲା—ପେଟରେ ନିଆଁ ହୁଳା ଜ୍ଵଳି ଯାଉଚ— ସାପ ଫଁ ଫଁ ହଉଚ—ଚୁଟୁନ୍ଦା ଚିଁ ଚିଁ ହଉଚ···ପୂର୍ବାଶା ଭାଇନା କାଠ ପାଣି ଦେଇଚନ୍ତ—ମତେ କେହି କିଛି କହନା—ମୁଁ ଶୋଇବ । କହୁ କହୁ ଶୋଇ ପଡ଼ିବ । (ଠିଆ ଠିଆ ଶୋଇଲା )

ପୂର୍ବାଶା ॥ ଆରେ ଆରେ, ଏଠି କଣ ଶୋଇଲୁ ?

ନଗାନା ॥ ନାଇଁ ଭାଇନା—ଏମିତ ଶୋଇବ ତ । ସେଠୁ କଣ କରିବ କୁହ—

ପୂର୍ବାଶା ॥ ସେଇଠୁ···ଏଇ ସେ ଉତ୍ତରବା ଶିବୁ ସାନ୍ତର ଏଣିକି ଆସୁଚ । ତୋଟା ଭିତରକୁ ଚାଲ କହିବ । ······ ହଁ ( ଟଙ୍କାଟିଏ ଦେଇ ) ଏ ଟଙ୍କାଟି ରଖ୍ ।

ନଗାନା ॥ ଟଙ୍କା ?

ପୂର୍ବାଶା ॥ ଚାଲ୍ ସବୁ କହୁଚ ।

[ ଦୁହେଁ ନିଷ୍କ୍ରାନ୍ତ ହୋଇଗଲେ ]

❊ ❊ ❊

[ ସେଇ ଦିନ ଅପରାହ୍ନର ଘଟଣା । ଗାଁ ଦାଣ୍ଡରେ ପଶାଖେଳ ଚାଲିଚି । ଅନ୍ୟମାନଙ୍କ ମଧ୍ୟରେ ପୂର୍ବାଶା ଅଛି । ଦଉଡ଼ି ଦଉଡ଼ି ନଗାନା ଆସି ପୂର୍ବାଶା ପାଦତଳେ ଲମ୍ବ ହୋଇ ପଡ଼ିଲା ]

ଚୂଝାଗ୍ର ॥ ଆରେ ଆରେ ନବାନା, ଉଠ୍ ଉଠ୍ । ତୋ ପେଟ କେମିତି ଅଛି କହ । ( ନବାନା ଉଠି ବସି ପାଟିରୁ ସେଇ ପୁଡ଼ିଆଟି କାଢ଼ି ଦେଖାଇଲା । )

ନବାନା ॥ ଏ ଜନ୍ତୁ ପେଟ ଭିତରେ ଥିଲେ ମୁଁ ଆଉ ବଞ୍ଚିଥାନ୍ତି ।

ଜଣେ ବ୍ୟକ୍ତି ॥ କଣ—କଣ ହୋଇଛିରେ ନବାନା ।

ନବାନା ॥ କଣ କୁଆଡ଼ ନାହିଁ—ହଠାତ୍ ମୋ' ପେଟ ଖୋଷିଲା । ମୁଁ ମାଟି ଦରଣ୍ଡି ପକଉ ଥାଏ । ଚୂଝାଗ୍ର ଭାଇନାଙ୍କ ପାଖକୁ ଦଉଡ଼ିଲି ।

ଚୂଝାଗ୍ର ॥ ନବାନା ଉପରେ ଯେମିତି ମୋ' ଆଖି ପଡ଼ିଲା—ମୁଁ ଜାଣିଗଲି, ଇଏ ପେଟମରା ରୋଗ ନୁହେଁ । କିଏ ଔଷଧ କରିଛି । ତାକୁ କାଟପଣି ଦେଲି ।

ବ୍ୟକ୍ତି ॥ ସେଇଠୁ ?

ନବାନା ॥ ଏଇ ଘଡ଼ିଏ ତଳେ ଭକ୍ ଭକ୍ ହୋଇ ଖାଲି ହଳଦିଆ ପାଣି ବାନ୍ତି ହୋଇ ପଡ଼ିଲା—ତା' ସାଙ୍ଗକୁ ଏ ପୁଡ଼ିଆ ! ଓହୋ !

ବ୍ୟକ୍ତି ॥ କି ପୁଡ଼ିଆରେ ଏଇଟା ।

ନବାନା ॥ ଏଇ ଦେଖୁଛ—ଭଙ୍ଗା ଚୁଡ଼ି ଖଣ୍ଡା, ନଖ, ଚେଇ—ବାଳରେ ସବୁ ବନ୍ଧା ହୋଇଛି ।

ବ୍ୟକ୍ତି ॥ କଣ କହୁଚୁ ?

ଚୂଝାଗ୍ର ॥ ଏ ପଦାର୍ଥ ପେଟରୁ ବାହାରି ନ ଥିଲେ କାଲି ଏତେବେଳକୁ ରକ୍ତ ବାନ୍ତି କରି···(ଇଙ୍ଗିତରେ ବୁଝେଇ ଦେଲା )।

ନବାନା ॥ ନଅ ଭାଇନା ତମ ପାଉଣା ।

( ଟଙ୍କାଟି ଦେଇ ପ୍ରଣାମ କଲା )

ଚୂଝାଗ୍ର ॥ କାହିଁକି ଦଉଛୁରେ···

ବ୍ୟକ୍ତି ॥ କି କଥା କହୁଛ ପଣ୍ଡାଏ । ତମ ପାଉଣ୍ଡା ସେ ତବକାଇଁ ? ଏ ବିଦ୍ୟା ହାସଲ କରି ଘରେ ଉତ୍ତମ କାମଟିଏ କରିଛ । ଚୋକାଠା ବଞ୍ଚିଗଲ ।

ନଖାନା ॥ ଡରରେ ମୁଁ ଖାଲି ଥରୁଥାଏ ।

ପୂର୍ଣ୍ଣାସ ॥ ଆ—ଟିକଏ ଘୁଞ୍ଚିଆ । ମୁଁ ଝାଡ଼ିଦିଏ—ଡର ଭୟ ସବୁ ଛାଡ଼ିଯିବ ।

[ ପୂର୍ଣ୍ଣାସ ନଖାନାଙ୍କୁ ଝାଡ଼ିଲାବେଳେ ଦୁହେଁ ଖୁସିରେ ଆଖି ମିଟି ମିଟି କରୁଥାନ୍ତି ]

❋ ❋ ❋ ❋

[ ଦିନେ ଦୁଇଦିନ ପରର ଘଟଣା । ହନୁସିଂର ଘର । ଅପରାହ୍ଣ । ଘର ଭିତରେ କଳାବତୀ ଚେକା ପକେଇ ବସିଛି । ଡାହାଣୀ ଲଗିବାର ସବୁଲକ୍ଷଣ ତା'ଠାରେ ବିଦ୍ୟମାନ । ବାଳମୁକୁଳା—ଶାଢ଼ୀକୁ ଗୁରେଇ ଭୁରେଇ ହେଲା ଭଳି ପିନ୍ଧିଛି । ମଝିରେ ମଝିରେ ଆଖି ଡୋଳା ଓଲଟାଉଛି—ବେଳେ ବେଳେ ମନକୁ ମନ ହସୁଛି ତ ବେଳେ ବେଳେ ମନକୁ ମନ ଅସ୍ପଷ୍ଟ ଭାଷାରେ କହୁ ହଉଛି ।···ଟିକଏ ଦୂରରେ, ମୁଣ୍ଡରେ ହାତ ଦେଇ ହନୁସିଂ ବସିଛି ।]

ହନୁସିଂ ॥ ଶେଷକୁ ଏଇଆ ମୋ' କପାଳରେ ଥିଲା ?

କଳାବତୀ ॥ ହଉଥା—ଝୁଁ ରି ହଉଥା—ଝୁଁ ରି ହଉଥା—ଝୁଁ ରି···

ହନୁସିଂ ॥ ଶୁଣ୍, ତୁ ମୋର ଘରଜା—

କଳାବତୀ ॥ (ହି ହି ହୋଇ ହସିଲା)

ହନୁସିଂ ॥ ହେ—ହେ—ଏମିତି ହସନା—ମତେ ଡର ମାଡ଼ୁଛି ।

କଳାବତୀ ॥ ହଇରେ ହେ ହନୁସିଂ—ତୁ ସବୁ କଳାବତୀକୁ ବାହା-ହେଉଛୁ—ମୋ ବର ହବୁ କେମିତି ? ତୁଠା ବଟପୀ ସୁ ରୁଷଟାଏ କରେ ?

ହନୁସିଂ ॥ କଣ ମଣିଷ କରିବ ଏଥିକି ?···ଆଲେ, ଏଇ ସାଇ ଘରୁ ଦ ତିନିଜଣ ମାଇପେ ଆଇଚନ୍ତି ।—ଡାକିବି ତାଙ୍କୁ—ତତେ ଟିକିଏ ଦେଖିବେ ?

କଳାବତୀ ॥ (ବଡ଼ ପାଟିରେ) ସବାଖାଇଏ । ମତେ ଦେଖିବେ କଣ ? ମୁଁ କଣ ହାଣ୍ଡିରେ ଖାଇଚି—ପରପୁରୁଷ ସାଙ୍ଗରେ ଭାବନାବ ନଗେଇଚି ।···ହେଇ—ସେ ଦୁଆର ମୁହଁରେ କିଏ ଦ' ତିନିଟା ନଙ୍ଗପଙ୍ଗ ହଉଚନ୍ତି । ଆଲେ ମତେ ଦେଖିବ ପରା—ଆସ । ଏ ଘରେ ଗୋଡ଼ ପକେଇବତ, ମୁଁ ସୁ' କାନ୍ଥରୁ ଯାଇ ତମ କାନ୍ଥରେ ବସିବି ।

[ ବାହାରେ ସ୍ତ୍ରୀ ଲୋକମାନେ ଉପୁରେ କୋଳାହଳ କରି ପଳେଇ ଗଲେ । ]

ହନୁସିଂ ॥ ( ଟିକିଏ ରାଗୀ) ଏତେ କଥାତ କହୁଚୁ, କହୁନୁ କାହିଁକି ତୁ କିଏ ?

କଳାବତୀ ॥ (କଟମଟ କରି ଚାହିଁ) ତୋ ବୋପାର କଣ ଗଲା ବେ, ମୁଁ କିଏ ?

ହନୁସିଂ ॥ ବଧାତାରେ···

ସ୍ୱର ॥ (ବାହାରୁ) ଦାଦ, ଗୁଣିଆ ଆସିଲେଣି ।

ହନୁସିଂ ॥ ଆସିଲେଣି ? (ଦ୍ୱାର ମୁହଁକୁ ଯାଇ) ଆସ—ଆସ ମହାରଣାଏ—ଏଇ ଘରକୁ ଆସ ।

[ ଗୁଣିଆ ଆସିଲା । ହାତରେ ଜାଉଁଳ-ବେତ, କାନ୍ଥରେ ଝୁଲା । ଅଣ୍ଟାରେ ଗାମୁଛା ଭିଡ଼ା ହୋଇଚି । ମଥାରେ ବଡ଼ ସିନ୍ଦୂର କଳ ଘର କବାଟ ଆଉଜା ହେଲା ]

ଗୁଣିଆ ॥ କେତେବେଳୁ ଗ୍ରାସ କଲାଣି ?

ହନୁସିଂ ॥ ଆଜ ଏଇ ଖରାବେଳୁ ପରା—

ଗୁଣିଆ ॥ ହୁଁ । ଉଦୁଉଦିଆ ଦିପହର—ଠିକଣା ବେଳରେ ଗ୍ରାସିଚ।···କଏ ସେ ଜନ୍ତୁ କହିଲଣି ଭଲା ?

ହନୁସିଂ ॥ (କ ଢ କାଢ) ପଞ୍ଚରଦେଲ ଯେ, ଖିଙ୍କାର ଉଠି ମତେ କହିଲ—

କଳାବଣ୍ଟ ॥ ତୋ' ବୋପାର କଣ ଗଲାବେ—ମୁଁ କଏ ?

ହନୁସିଂ ॥ ହେଇଟ, ସେତେବେଳେ ଠିକ୍ ଏଇ କଥା ପଦକ ମତେ କହିଥିଲା ।

ଗୁଣିଆ ॥ ଭରି ଜବ୍ରଦସ୍ତ ଜନ୍ତୁ ଅଛୁ ।

ହନୁସିଂ ॥ କଣ ହବ କହିଲ ମହାରଣାଏ ?

ଗୁଣିଆ ॥ (ଉତ୍ତରରେ ଗୁଣିଆ ଫୁଟ୍‌କ ମାରଲା)

ହନୁସିଂ ॥ ଏ ଘରକୁ ବୋହୂ ହୋଇ ଆସିଲାଦିନୁ ଅଡ ଅଲଅଳରେ ବଢ଼ିଚ । ମାଡ଼ ଗାଳ ଭୋକ ଶୋଷ କଚ୍ଛୁ ସହିପାରେ ନାହିଁ ।

ଗୁଣିଆ ॥ ( କଳାବଣ୍ଟିକୁ ) ମୋ' ହାତର ଏ ଜାଉଁଳ ବେତ ଦେଖୁଚୁ ?

[ କଳାବଣ୍ଟ ମଥା ଝୁଙ୍ଗାରଲା ]

ଗୁଣିଆ ॥ ହୁଁ ।

[ ଗୁଣିଆ ନଜେ ନାଚକୁଦ ବେତକୁ ଦଶୃରଥର ଶୂନ୍ୟରେ ବୁଲେଇ କଳାବଣ୍ଟ ଯୋଉ ସ୍ଥାନରେ ବସିଥିଲା ତା'ର ଦୁଇ ପାଖ ଭୂଇଁରେ ଖୁବ୍ ଜୋର୍ ଦୁଇ ପାହାର ପିଟିଲା । ସେ ପିଟି ସାରବା ପରେ କଳାବଣ୍ଟ ସିଧା ହେଇ ବସି, ପୁଞ୍ଚ ଗୀତ ଗାଇ ଗାଇ ଗୋଟାଏ ଯେଉ ପୁଞ୍ଚ ଖେଳ ପୁଣି ପୂର୍ବପର ଚେକା ମାଡ଼ ବସିଲା । ]

କଳାବତୀ ॥ ପାଣି । ···ପିଇବ

[ ହନୁସିଂ ଅତି ଆଗ୍ରହରେ ପାଣି ଆଣିବାକୁ ଗଲା ବେଳକୁ ଗୁଣିଆ ତାକୁ ଅଟକାଇଲା । ]

ଗୁଣିଆ ॥ ହୁଁ ।

ହନୁସିଂ ॥ ଦେଖନ୍ତୁ, କେଡ଼େ ବଳକରେ ପାଣି ମାଗୁଛି ।

ଗୁଣିଆ ॥ କିଏ ମାଗୁଛି ? ବୋହୂ ?

ହନୁସିଂ ॥ ଏଇ ମ ଗିଲା ପରା ।

ଗୁଣିଆ ॥ ବୋହୂ ନୁହେଁ । ତା' ଉପରେ ଯୋଉ ଜନ୍ତୁ ସବାର ହୋଇଛି, ସେଇ ମାଗୁଛି ।

ହନୁସିଂ ॥ ସତ କି ?

ଗୁଣିଆ ॥ ସତ । ··· ତା' ଆଖି କିମ୍ବା ଦଉଛି, ସିଏ ଶୁଖିଲା ବଳିତା ଧୂପ ଖୋଜୁଛି । ଗୋଟାଏ ଧୂପରେ ପୂରା ସାବାଡ଼ ହୋଇଯିବ ।

[ ଗୁଣିଆ ଝୁଲା ଭିତରୁ ଗୋଟିଏ ମୋଟା ସଳିତା ବାହାର କଲା । ଝିକ୍‌ମିକ୍ ପଥରରୁ ନିଆଁ ବାହାର କରି ସଳିତାକୁ ଜଳାଇଲା । କିଛି ସମୟ ଜଳିଲା ପରେ ସଳିତାକୁ ଲିଭେଇ ଦେଲା । କେବଳ ଧୂଆଁ ବାହାରୁ ଥାଏ ]

ଗୁଣିଆ ॥ ନେ, ଶୁଙ୍ଘ ।

କଳାବତୀ ॥ ଭୁ ଶୁଙ୍ଘୁନୁ ( ଗେହ୍ଲେଇ ହୋଇ କହିଲା )

ଗୁଣିଆ ॥ ( ହସି ଉଠି ) ମୁଁ ଶୁଙ୍ଘିବ !! ଆଚ୍ଛା—ଆଚ୍ଛା—

[ ଗୁଣିଆ କଳାବତୀର ଠିକ୍ ସାମ୍ନାରେ ବସିଥାଏ । ସେ ଟିକିଏ ସାମ୍ନାକୁ ଝୁଙ୍କି ପଡ଼ି ଯେମିତି ସଳିତାକୁ ତା' ନାକ ପାଖକୁ ନେଇଛି, କଳାବତୀ ତା' ଉପରକୁ ଝାମ୍ପି ପଡ଼ି ତା'

ନାକକୁ କାମୁଡ଼ି ଦେଲା । ଗୁଣିଆ ଚିତ୍କାର କରି
ଉଠି ଠିଆ ହୋଇ ପଡ଼ିଲା । ]

ଗୁଣିଆ ॥ ( ପାଟି କରି ) ମୋ' ନ କ—ମୋ' ନାକ କାମୁଡ଼ି ଦେଲା । ଏଇଟାକୁ ପ୍ରେତ ଗ୍ରାସ କରି ନାଇଁ—ଯ୍ୟାକୁ ଜଅନ୍ତା ଡାଆଣୀ ଲଗିଚ—ମୋ' ନାକ କାମୁଡ଼ିଦେଲା ।

[ କହି କହି ପଳେଇଗଲା ]

ହନୁସିଂ ॥ ହଇଲେ କଳାବଉ···

କଳାବଉ ॥ ଯାଉନୁ ତୁ ! କଳାବଉ କିଏ ବେ ?

ହନୁସିଂ ॥ ମୁଁ ଏବେ କ ବୁଦ୍ଧି କରିବି ଲୋ ମା ? ନାକଟାକୁ କାମୁଡ଼ିଦେଲା !

ନଗୀନା ॥ ( ବାହାରୁ ) ହନୁସିଂ ଘରେ ଅଛ ?

ହନୁସିଂ ॥ କିଏରେ ଭାଇ ? ମୁଁ ଆଉ ଏ ସଂସାରରେ ନାହିଁ—ଘରେ ରହିବ କଣ ?

[ ନଗୀନା ପଶି ଆସିଲା ]

ନଗୀନା ॥ ତମ ବୋହୂଟାକୁ କଣ ତେମେ ମାରିଦବ ସିଂହେ ?

[ ନଗୀନାକୁ ଦେଖି କଳାବଉ ମନକୁ ମନ
ଉଟର ଉଟର ହଉଥାଏ ]

ହନୁସିଂ ॥ ମୁଁ···ମୁଁ ମାରଦେବି !!

ନଗୀନା ॥ ତେମେ ଆନନ୍ଦ ପଣ୍ଡା ପୂଝାରୀକୁ ଡାକୁନ କାହିଁକି ?

ହନୁସିଂ ॥ ସିଏ ଏ ବିଦ୍ୟା ଜାଣେ ?

ନଗୀନା ॥ ସେ ଗୁଣିଆ ନାକରୁ ଝର ଝର ରକତ ବୋହୁଚି । ତେମେ ଯ୍ୟାକୁ ସମ୍ଭାଳ ରଖ । ମୁଁ ପୂଝାରୀ ଭାଇନାକୁ ଡାକ ଆଣୁଚ । (ଚାଲିଗଲେ)

କଳାବଉ ॥ ମତେ ନିଦ ମାଡ଼ିଲାଣି—ଶୋଇବି ।

ହନୁ ॥ ହଉ, ମୋ ସୁନାଟା—ଧନଟା—ଟିକିଏ ଶୋଇପଡ଼ ।

କଳାବତୀ ॥ ମୁଁ ମରଯାଉ ଥାଏଟି । ମୁଁ ଶୋଇ ପଡ଼ିଲେ ତୁ ମତେ ଟେକି ନେଇ ବାରଆଡ଼େ ପକେଇ ଦେଇ ଆସିବୁ । ଘର ସୁଆଗିଆ ।

ହନୁ ॥ହଉ ରହ, ଆନନ୍ଦ ପଣ୍ଡା ପୂର୍ଣ୍ଣାସ୍ତ୍ରୀ ଆସୁ ।

କଳାବତୀ ॥ ( ମୁହଁ ମୋଡ଼ି ) ହଁ ବା । ପୂର୍ଣ୍ଣାସ୍ତ୍ରୀ ଆସି ନାହିଁ ଯେ, ଆସିବ !!

[ ପୂର୍ଣ୍ଣାସ୍ତ୍ରୀ ଓ ନବୀନା ଆସିଲେ ]

ହନୁ ॥ ( ପୂର୍ଣ୍ଣାସ୍ତ୍ରୀ ହାତ ଧରି ) ପୂର୍ଣ୍ଣାସ୍ତ୍ରୀ ଭାଇନା···

ପୂର୍ଣ୍ଣାସ୍ତ୍ରୀ ॥ ଶୁଣ ସିଂହେ, ଆମ ପାଉଣା କଥାଟା ଆଗେ ଛିଣ୍ଡେଇ ଦିଅ ।

ହନୁ ॥ ଭାଇଟା ମୋର—ତୁ ଯାହା କହିବୁ ମୁଁ ଦେବି···

[ କାନ୍ଦି ଉଠୁଥାଏ ]

ପୂର୍ଣ୍ଣାସ୍ତ୍ରୀ ॥ ଆଚ୍ଛା—ଆଚ୍ଛା—

[ ଦେଖାଗଲା, କଳାବତୀ ଓଢ଼ଣା ଟାଣି ବସିଲାଣି ]

ହନୁ ॥ କଣ ଓଢଣା ଟାଣିଲଣି ]

ପୂର୍ଣ୍ଣାସ୍ତ୍ରୀ ॥ ହୁଁଉ···। ମତେ ଚହ୍ନିଲଣି ।

ହନୁ ॥ ଚହ୍ନିଲଣି ? ···କଏ ସେ ?

ପୂର୍ଣ୍ଣାସ୍ତ୍ରୀ ॥ ସେଇ କହିବ ।···ସବୁ ତା'ର ମୁହଁରୁ ଆଦାୟ କରିବ । ··· କଲେ, ଚହ୍ନିଚୁ ମତେ···

[ ମୁଣ୍ଡ ଟୁଙ୍ଗାରି ହଁ କଲା ]

ଓଢ଼ଣା ଟେକ୍—ଟେକ୍ କହୁଚି ।

[ ଓଢ଼ଣା ଟେକିଲା । ]

ପଦଏ କଥାରେ କହିଦେ, କଏ ତୁ ?

[ କଳାବତୀ ଧୀର ଗଳାରେ କହୁଥାଏ ]

କଳାବତୀ ॥ ନୂଆ ଘାଟେଣୀ···

ପୂର୍ଣ୍ଣାଶ୍ରୀ ॥ ହୁଁ, ନୂଆ ପାଠଣା—

କଳାବତୀ ॥ ଗୋବନ୍ଦ ସାହୁ—

ପୂର୍ଣ୍ଣାଶ୍ରୀ ॥ ( ହଠାତ୍ ) ଆଲୋ ତୁ ତା'ର ମଝିଆ ଝିଅ ସେବତୀ କଦଳୀର ମଞ୍ଜି ଖାଇ ମରିଥିଲୁ।

[ କଳାବତୀ ମଥା ଟୁଙ୍ଗାରି ହଁ କଲା ]

ପୂର୍ଣ୍ଣାଶ୍ରୀ ॥ ତୋ'ର ଏତେ ବଢ଼ପ—ତୋ' ଚଉଭୁଜ ଗୁଡ଼ ତୁ ଏ ଗାଁରେ ଆସି ଧାପ କଲୁଣି !

କଳାବତୀ ॥ ଉଦୁଉଦୁଆ ଦିପହର । ମୁଁ ଆସି ହନୁସିଂ ଖଳାବାଡ଼ିର ପିଜୁଳି ଗଛତଳେ ଠିଆ ହୋଇଥିଲି ।

ହନୁସିଂ ॥ (ଡରରେ ପୂର୍ଣ୍ଣାଶ୍ରୀକୁ କୁଣ୍ଢେଇ ପକେଇ ) ଭାଇନା— ଭାଇନା—ଭାଇନା

ପୂର୍ଣ୍ଣାଶ୍ରୀ ॥ ରୁହ—ରୁହ—ତୁମେ ।—ହୁଁ, ସେଇଠୁ...

କଳାବତୀ ॥ ମୁଣ୍ଡରେ ସୁନ୍ଥା ପକେଇ—ଧୋବଲୁଗା ପିନ୍ଧି—କଜଳ ସିନ୍ଦୁର ଢାଳି ହନୁସିଂ ଭାର୍ଯ୍ୟା ବାଡ଼ିକୁ ଆସିଲି ।

ହନୁସିଂ ॥ ପୂର୍ଣ୍ଣାଶ୍ରୀ ଭାଇନା—

ପୂର୍ଣ୍ଣାଶ୍ରୀ ॥ ତୁ ସେଇଠୁ ପିଜୁଳି ଗଛ ଉପରକୁ ଉଠିଗଲୁ,

କଳାବତୀ ॥ ହଁ, ଗଛ ଡାଳରେ ଗୋଡ଼ ଲମ୍ବେଇ ବସିଲି । କଳାବତୀ ପିଜୁଳି ଗଛ ତଳକୁ ଆସିଲା—

ହନୁସିଂ ॥ (ଡରରେ) ଓହୋ—ଓହୋ—

କଳାବତୀ ॥ ପିଜୁଳିଟାଏ ତୋଳିବ ବୋଲି ଉପରକୁ ହାତ ବଢ଼େଇଲା—ତା' ମୁଣ୍ଡରୁ ଲୁଗା ଖସି ଗଲା—ମୁଁ ସେଇଠୁ ଖୁସ୍ କନା କଳାବତୀ କାନ୍ଧ ଉପରକୁ ଖସି ପଡ଼ିଲି ।

ପୂର୍ଣ୍ଣାଶ୍ରୀ ॥ ବଜ୍ରାଘାତ ମାଇକିନିଆ – ତୋ' ସଉଭୁଣୀ ସେ, ତା' କାନ୍ଧ ଉପରକୁ ଖୁସ୍‌କନା ଖସି ପଡ଼ିଲୁ? ଯେମିତି ଖୁସ୍

କନା ଆସିବୁ, ସେମିତ ଖୁସ୍‌କନା ଯା'। (ଜୋର୍‌ରେ) ଉଠ୍-ଉଠ୍

[ କଳାବତୀ ଓଠ ଫାଟେଇ କାନ୍ଦିବାକୁ ଆରମ୍ଭକଲା । ]

କଳାବତୀ ॥ କାହିଁକି ମତେ ଡଙ୍ଗ ଦଉଡ଼ କହୁଚ ?

ପୂର୍ଣ୍ଣାସ୍ତ୍ରୀ ॥ ନବାନା, ଏ ଘର ସ୍ୱର କଣ ଯାକ କଳ ପକା ।

[ ନବାନା ଝୁଲାରୁ ଧୂଳ ନେଇ ସ୍ୱର-କଣରେ ଗୁଣ୍ଡି ଦେଇ ଆସିଲା । ପୂର୍ଣ୍ଣାସ୍ତ୍ରୀ ଯାଇ କଳାବତୀ ଚୁଟିକୁ ଧରଲା ]

ପୂର୍ଣ୍ଣାସ୍ତ୍ରୀ ॥ (ଉଗ୍ରମୂର୍ତ୍ତି ଧାରଣ କରି ଚୁଟି ଝୁଙ୍କେଇ) କହ ଯିବୁ କି ନାହିଁ—ଯିବୁ କି ନାହିଁ—ଯିବୁ କି ନାହିଁ···

କଳାବତୀ ॥ ଯିବ—ଯିବ—ଯିବ···

[ ପୂର୍ଣ୍ଣାସ୍ତ୍ରୀ ଚୁଟି ଗୁଡ଼ାଦେଇ ବାର ଦର୍ପରେ ଘର ସାରା ପଇଁତରା ମାରୁଥାଏ ]

ପୂର୍ଣ୍ଣାସ୍ତ୍ରୀ ॥ ହୁଁ ।···ସିଂହେ, ଯାଅ—ଗୋଟାଏ ଗୁଞ୍ଜୁଣୀ ମୁଠା, ଗୋଟାଏ କୁଲ୍ ଆଉ ଗୋଟାଏ ନୋଟାରେ ନୋଟାଏ ପାଣି ଆଣ । ସେ ପିଜୁଳି ଗଛ ପାଖରେ ମାଠିଆଏ ପାଣି ଢକିବାକୁ କାହାକୁ କହ । ଆଉ ଏ ଘର ଆଖ ପାଖ ଅଗଣାରେ ଯିଏ ଅଛନ୍ତି—ସମସ୍ତଙ୍କୁ ହଟେଇ ଦଅ ।···ଯାଅ ।

( ହନୁ ସିଂ କୃତ୍ୟ କୃତ୍ୟ ହୋଇ ବାହାରିଗଲା )

ନବାନା, ତୁ ଯା—ବାଡ଼ରେ ସେ ପିଜୁଳି ଗଛଟାକୁ କଳ ଦେଇ ଆ ।

[ ନବାନା ବାହାରକୁ ଗଲା । ଏହାପରେ ଦୁହେଁ ଏଣିକି ତେଣିକି ଦୁହିଁ ନିଜ ନିଜ ପୂର୍ବାବସ୍ଥାକୁ ଫେରି ଆସିଲେ । କଳାବତୀର

କାନ୍ଦ ବନ୍ଦ ହୋଇଗଲା । ପୂର୍ଣ୍ଣାଶା ମୁହଁରେ ହସ । ନମ୍ର ସ୍ୱରରେ କଥାବାର୍ତ୍ତା ହେଲେ ]

କଳାବତୀ ॥ ହେ, ସବୁ ଠିକଣା ବାଟରେ ଗ୍ଳଛ ଟି ?

ପୂର୍ଣ୍ଣାଶା ॥ ବଢ଼ିଆ—ବଢ଼ିଆ ଗ୍ଳଛ ।

କଳାବତୀ ॥ ମୋ ଚୁଟିକୁ ଏମିତି ରାଗରେ ଝୁଙ୍କେଇ ଦେଲ—ମତେ ଭାରି କାଟିଲା···

ପୂର୍ଣ୍ଣାଶା ॥ କେତେବେଳେ ପୁଣି ଟିକଏ ଆଦର କରି ଦେଲେ ମନ ଖୁସି ହୋଇଯିବ ।

[ ଦୁହେଁ ପୁଣି ସଜାଗ ହୋଇ ଉଠିଲେ ]

ହୁଁ, ପୁଣି ସେମିତି ୧୦ ଫଟେଇ କାନ୍ଦ୍-କାନ୍ଦ୍ ।

[ କଳାବତୀ ପୁଣି କାନ୍ଦିଲା । ପୂର୍ଣ୍ଣାଶା ଘର ସାରା ବୁଲୁଥାଏ । ନବୀନା ଆସିଲା ।··· ସବୁ ଜିନିଷ ନେଇ ହନୁ ସିଂ ମଧ୍ୟ ଆସିଲା ]

ହନୁ ସିଂ ॥ ସବୁ ଆଣିଲି ଭାଇନା ।

ପୂର୍ଣ୍ଣାଶା ॥ ସିଂହେ, ଯେମିତି ତମ ଭାର୍ଯ୍ୟା ୧୦ରୁ ଯାଇ ପିଜୁଳି ଗଛ ମୂଳରେ କଣ୍ଢୁଢ଼ ହୋଇ ପଡ଼ିବ, ତେମେ ତୁରନ୍ତ ତା ଉପରେ ପାଣି ମାଠିଆକୁ ଢାଳି ଦେଇ ତାକୁ ଶୂନ୍ୟେ ଶୂନ୍ୟେ ଟେକି ଘରକୁ ନେଇ ଆସିବ—ଆଉ ତାକୁ ପେଟେ ପାଣି ପିଆଇ ଦବ ।

ହନୁ ସିଂ ॥ ତେଣିକି ?

ପୂର୍ଣ୍ଣାଶା ॥ ତେଣିକି, ସବୁ ଥ···ଣ୍ଡା ।

ହନୁ ସିଂ ॥ ହେ ପ୍ରଭୁ !

[ ପୂର୍ଣ୍ଣାଶା ହଠାତ୍ ଆଖି ବୁଜି, ଦୁ ହାତ ମୁଠା କରି କିଛିକ୍ଷଣ ଥରଥର ହୋଇ କମ୍ପିଲା । ତା'ପରେ ଆଖି ଖୋଲି ଖୁବ୍ ଜୋର୍ ଗଳା'ରେ ଆଦେଶ ଦେଲା ]

ପୂଝାରୀ ॥ ଉଠାବେ, ଦାନ୍ତରେ ନୋଟା କାମୁଡ଼ି ଧ' ।

—ଗୀତ—

ଝପଟେ ଧର୍‌ଲୁ କାମୁଡ଼ି
ତୋ'ର ଦାନ୍ତରେ ନୋଟା
ହାତ ଗୋଡ଼ ଭର ନ ଦେଇ
ତାକୁ ଭୂଇଁରୁ ଉଠା । ୧ ।

[ କଳାବଣ୍ଠ ଦାନ୍ତରେ ନୋଟା ଧରିଲା ]

ଡାହାଣ ହାତରେ ଜାବୁଡ଼ି
ଧ' ଗୁଞ୍ଜୁଣି ମୁଠା
ବାଁ ହାତ ଟିପ ଅଗରେ
ଧର ଥା' କୁଳଟା । ୨ ।

[ କଳାବଣ୍ଠ ଆଦେଶ ପାଳନ କଲା ]

ପୂଝାରୀ ॥ —ଗୀତ—

ନଇଁପଡ଼ ଠିଆ ହେଇ ଯା
ଭଙ୍ଗି ଦେଇ ତୋ ଅଣ୍ଟା
(ତୋତେ) ପାତାଳ ପୁରୀକୁ ପେଶିବ
ଯେବେ ଗାଳିବୁ ଛଟା । ୩ ।

[ ସବୁ ଜନିଷ ଠିକ୍ ଠିକ୍ ଧରି
କଳାବଣ୍ଠ ଅଣ୍ଟା ଭଙ୍ଗି ଠିଆହେଲା ]

ପୂଝାରୀ ॥ ହୁଁ । (ଛନ୍ଦରେ)
ଏ ଘଡ଼ି...
ପିଜୁଳି ଗଛ ଯାଏ...
ଏମିତି ଅଣ୍ଟା ଭଙ୍ଗି...
ଦଉଡ଼ ଦଉଡ଼ ଯିବୁ—ଉ...ଉ...ଉ...।
ଯା'—ଭାଗ୍

[ କଳାବନ୍ତ ସେମିତ ଦଉଡ଼ି ଦଉଡ଼ି ଗଲ ]

ସିଂହେ, ତୁମେ ତା' ପଛେ ପଛେ ଯାଅ ।

[ ହନୁ ସିଂ ଅନୁକରଣ କଲ ]

  

[ ଅତୀତ ଦୃଶ୍ୟ ଶେଷ ହେଲ । ଆମେ ପୁଣି ଫେରି ଆସିଲୁ ପର୍ବ ଦୃଶ୍ୟକୁ । ପର୍ବର ଦୃଶ୍ୟ । ବାବାଜି ଭୋଜନ ସାରି ଆଚମନ କଲେ । ବାବାଜି ଖୁବ୍ ଗମ୍ଭୀର ଜଣାପଡ଼ୁଥାନ୍ତି]

ବାବାଜି ॥ ହୁଁ । ଡାଆଣୀ ଛାଡ଼ଗଲ ?

ପୂଝାରୀ ॥ ସବୁତ କହିଲ ।

ବାବାଜି ॥ ତୁମ୍ଭ ଡାହାଣୀ ହୋଇ ଲଗିଲୁ—ତୁମ୍ଭ ଗୁଣିଆ ହୋଇ ଝାଡ଼ିଲୁ ?

ପଝାରୀ ॥ ମହାରାଜ···

ବାବାଜି ॥ ଏବେ ତ ଖୁବ୍ ଖୁବ୍ ଜାଗାରୁ ଡାକରା ଆସୁଥିବ ?

ପୂଝାରୀ ॥ ଆସୁଛି । ଆପଣ ତ ଜାଣନ୍ତି—ସବୁ ଭୂତ ଡାହାଣୀ ମିଛ । ସେଥିଯୋଗୁଁ ଅବସ୍ଥା ଦେଖି ବ୍ୟବସ୍ଥା···

ବାବାଜି ॥ ବ୍ରାହ୍ମଣ ସନ୍ତାନ ତୁ । ଗାୟତ୍ରୀ ଛାଡ଼ି ଗାରଡ଼ି ବିଦ୍ୟା ପେଶା କରୁଛୁ ?

ପୂଝାରୀ ॥ ଗାୟତ୍ରୀ ପୋଷେଇଲ ନାହିଁ ମହାରାଜ । ଦେକରେ ପାଞ୍ଚ ପ୍ରାଣୀ କୁଟୁମ୍ବବନ୍ଧା । ସୁବଳ ବାବୁ ଘରୁ ମାସକୁ ଦରମା ମୋଟେ ଦେଡ଼ ଟଙ୍କା ।

ବାବାଜି ॥ ମାନ, ପାଞ୍ଚପ୍ରାଣୀ କୁଟୁମ୍ବ ପାଇଁ ତୁମ୍ଭ ଯେ ପାଞ୍ଚ ଶହ ପ୍ରାଣୀଙ୍କ ଗଳା କାଟୁଛୁ—ତାଙ୍କୁ ଠକୁଛୁ—ଭଣ୍ଡୁଛୁ ।

ପୂଝାରୀ ॥ ନାହିଁ—ନାହିଁ ମହାରାଜ—ଆପଣ ଏକଥା କୁହନ୍ତୁ ନାହିଁ ।

ବାବାଜି ॥ ଆମ୍ଭେ କହୁ କହୁନୁ । ଆମ୍ଭେ ତ କାଲି ଏ ଗାଁ ଛାଡ଼ି ଚାଲିଯିବୁ । କେବଳ ସତ କଥାଟା ତୋତେ ଚେତେଇ ଦଉଛୁ । ତୋ' ପାପର ବୋଝ ବୁକେଇ ଯାଉଛି । ଏତେ ପାପ ସହିବ ନାହିଁ ।

ପୂର୍ଣ୍ଣାଶ୍ରୀ ॥ ପାପ···ମୁଁ ପାପ କରୁଛି !!

ବାବାଜି ॥ ଯୋଉ ଦିନ ତୋ' ଶିଷ୍ୟ ନବୀନାର ମନ ତୋଠୁଁ ଫାଟିଯିବ—ସେଦିନ ସେ ତୋତେ ଠକିବ ।

ପୂର୍ଣ୍ଣାଶ୍ରୀ ॥ ନବୀନା ମତେ ଠକିବ !!

ବାବାଜି ॥ ତୁ ଯେବେ ଏତେ ଲୋକଙ୍କୁ ଠକୁଚୁ, ତୋର ଘର ମଣିଷ ସେ—ନ ଠକିବ କାହିଁକି ? ତୋ'ଠୁ ତା' ମନ ତୁଟିଗଲେ ତୋ' ଭଣ୍ଡ ସେ ଖୋଲିଦବ । ଫଳ କଣ ହବ ଜାଣୁ ? ସମସ୍ତେ ତୋ' ପାପ, ତୋ' ଦୁରାଚାରର କଥା ଜାଣିବେ ।

ପୂର୍ଣ୍ଣାଶ୍ରୀ ॥ ( ଡରି ଯାଇଛି ) ମହାରାଜ···

ବାବାଜି ॥ ହନୁସିଂ ଈର୍ଷ୍ୟା ବିଷ ଖାଇ ମରିବ—

ପୂର୍ଣ୍ଣାଶ୍ରୀ ॥ ନାଇଁ—ନାଇଁ—

ବାବାଜି ॥ ହନୁସିଂ ପାଗଳ ହୋଇଯିବ—

ପୂର୍ଣ୍ଣାଶ୍ରୀ ॥ ପାଗଳ··· !!

ବାବାଜି ॥ ସୁବଳ କାବୁଲିଠୁ ତୋ' କୁଳକଣ୍ଠ ଯିବ—

ପୂର୍ଣ୍ଣାଶ୍ରୀ ॥ ମୁଁ—ମୁଁ···

ବାବାଜି ॥ ଲୋକେ ତୋତେ ଛି ଛାକର କରି ମାରଧର କରିବେ-ପୁଲିସ ଆସିବ—ତୁ ଥାନା ଖାରଦରେ ଭର୍ତ୍ତି ହବୁ ।

ପୂର୍ଣ୍ଣାଶ୍ରୀ ॥ (ବାବାଜିଙ୍କ ପାଦ ତଳେ ପଡ଼ି) ମହାରାଜ—ମୁଁ କିଛି ଜାଣିପାରୁ ନାଇଁ—ବୁଝିପାରୁ ନାଇଁ—ଆପଣ ମୋର ସାହା ଭରସା···

ବାବାଜି ॥ ଉଠ୍ ଉଠ୍ ବାବା । ଆମ୍ଭେ କହିରୁ ଆମ୍ଭେ ଜଣେ ସାଧାରଣ ମଣିଷ । ଆମ୍ଭର କିଛି କ୍ଷମତା ନାହିଁ । ଯାହା ଯାହା ଘଟି ଯାଇଛି, ତୁ କରିଛୁ । ଏଣିକି ଯାହା କରିବାର କଥା—ତୁହି କରିବୁ ।

ପୂଝାରୀ ॥ କୋଉ କଥା ମହାରାଜ···ମୁଁ କଣ କରିବ ?

ବାବାଜି ॥ ଆଜି ଏଇ ସନ୍ଧ୍ୟାବେଳ—ଏ ନକାଞ୍ଜନ ନଦୀକୂଳ—ଶୁଭ ମୁହୂର୍ତ୍ତ—ପବିତ୍ର ସ୍ଥାନ । ତୁ ଏଯାବତ୍ ଯୋଉ ପାପକର୍ମ ମାନ କରି ଆସିଚୁ, ସେ ସମସ୍ତ ଆଜି ଏଇଠି ଛାଡ଼ି ତୁ ନୂଆ ବାଟରେ, ଭଲ ବାଟରେ ସତ୍ ମାର୍ଗରେ ଚାଲିବୁ ।

ପୂଝାରୀ ॥ ପାରିବି ତ ମହାରାଜ ? ସଂସାରୀ ଲୋକ ମୁଁ···

ବାବାଜି ॥ ପ୍ରଭୁ ତୋ' ମଥାରେ ଯେତେ ବୁଦ୍ଧି ଦେଇଚନ୍ତି—ସେ ସମସ୍ତ ଭଲ ବାଟରେ ଚଳେଇଲେ ତୋ'ର କିଛି ଅଭାବ ହବ ନାହିଁ । ନିଶ୍ଚୟ ଉତ୍ତମ ମଣିଷ ହେବୁ ।

ପୂଝାରୀ ॥ ଆମେ ସବୁ ଜାଣିଥିଲୁ, ବାବାଜି ମାନେ ଠକ । ମାତ୍ର ଆପଣ ମୋ ଆଖି ଖୋଲି ଦେଲେ । ଆପଣ ମହାତ୍ମା-ମୋ' ହାତ ଧରି ଆପଣ ମତେ ଭଲ ବାଟରେ ଛାଡ଼ି ଦିଅନ୍ତୁ···

ବାବାଜି ॥ ଆ ବାବା, ମୋ ସାଙ୍ଗରେ ଘଡ଼ିଏ ପ୍ରଭୁଙ୍କ ନାମ କୀର୍ତ୍ତନ କର ।

—ଗୀତ—

ଜଗତ ତାରଣ ହରି,
ପାପ ମୋ' ହରଣ କର
ମଣିଷରେ ହେବ ଗଣା,
ତହିଁକି କାରଣ କର । ୦ ।

କରିଛି ଅନେକ ପାପ
ଯେତେ ପାର ଦିଅ ତାପ
ମୋହ ମାୟା ପଥେ ମୋର, କଣ୍ଟକ ରୋପଣ କର ।୧।
ଯେତେ ଇ( .ଦିଅ ଦୁଃଖ
ତହିଁ ମୁଁ ପାଇବି ସୁଖ
ଏ ପାପୀ ପିଣ୍ଡରୁ ହୀନ ଲାଳସାକୁ ଦୂର କର । ୨ ।

●